# କୌତୁକ-ଦୀଘିକାଂ କାବ୍ୟମ୍ ।

କବିରାଜ-ରାଜବୈଦ୍ୟ-ନାରାୟଣ ଷଡ଼ଙ୍ଗୀ କୃତମ୍ ।

କବିରାଜ ଶ୍ରୀ ବାଲୁକେଶ୍ୱର ଆଚାର୍ଯ୍ୟ ଭିଷଗ୍ରତ୍ନେନ
ଅନୂଦିତଂ ପ୍ରକାଶିତଞ୍ଚ ।

---

ପ୍ରଥମ-ସଂସ୍କରଣମ୍ ।

କଟକ ମୁକୁର ଯନ୍ତ୍ରାଳୟେ । ଭୁଜଙ୍ଗଧର
ଦାସେନ ମୁଦ୍ରିତମ୍ ।

ମୂଲ୍ୟଂ ଦଶ ଆଣକମ୍ ।

# ଉତ୍ସର୍ଗ-ପତ୍ର ।



ମହାମହିମାନ୍ୱିତ ସୁଧୀରସୁଧାନିଧି ଦିବ୍ୟଗୁଣାଧାର

ହିନ୍ଦୋଳରାଜ୍ୟାଧୀଶ୍ୱର

ଶ୍ରୀଲ ଶ୍ରୀଯୁକ୍ତ ରାଜା ବାହାଦୁର ଶ୍ରୀ ଶ୍ରୀ ଶ୍ରୀ ନବକିଶୋର
ଚନ୍ଦ୍ରସିଂହ ମର୍ଦ୍ଦରାଜ ଜଗଦ୍ଦେବ—

ମହୋଦୟ-ମହାଶୟ-ଚରଣେଷୁ ।

ଆଶୀର୍ବାଦ ନିବେଦନଂ ।

ମହାଭାଗ !

ଶ୍ରୀମାନଙ୍କ ଆଦିପୁରୁଷଠାରୁ ଆସୁର୍ଯ୍ୟବଂଶୀୟ ଆମ୍ଭମାନଙ୍କ ଧନସ୍ଥାନ ରକ୍ଷଣାବେକ୍ଷଣ ପ୍ରଭୃତିରେ ଯେତେ ପୁରୁଷ ଏତେ ଅଗତ, ସେଥିମଧ୍ୟରୁ ଅଧୀନର ବାଲ୍ୟକାଳଟି ଚିରସ୍ମୃତି-ପଟ୍ଟରେ ଅଙ୍କିତ । ସେହି ସ୍ମୃତିର ଆଲେଖ୍ୟ-ତୁଳିକା ସଂସ୍କୃତଶିକ୍ଷା । ଏହା ଶ୍ରୀମାନଙ୍କ ଦେବୋପମ ମହୋଦାରଚରିତ ସର୍ବ୍ବଗୁଣାଳଙ୍କୃତ ସ୍ୱର୍ଗୀୟ ପିତୃଦେବଙ୍କ ଇଚ୍ଛା-ପ୍ରସୂତ । ଦେବାତ୍ମା ମହାରାଜ ମହାପୁରୁଷଙ୍କ ଅଶେଷ ବଦାନ୍ୟ ପୁଣ୍ୟ କର୍ମାନୁଷ୍ଠାନଗୁଡ଼ିକରେ ଆଜ ହିନ୍ଦୋଳ ରାଜ୍ୟରେ ସାରସ୍ୱତ ପ୍ରବାହ ଖେଳୁଅଛି । ପୁଣି ଭଗବାନଙ୍କ ପୁଣ୍ୟାତ୍ମା ଚନ୍ଦ୍ରଶେଖରଙ୍କୁ ନେଇ କରି ତାଙ୍କର ଦିବ୍ୟ ଧାମରେ ଦିବ୍ୟଗତି ହୋଇଅଛନ୍ତି । ଏ ଅଧୀନ ଆପୂର୍ବ୍ୟ ଚନ୍ଦ୍ରର ସର୍ବ୍ବବିଧ ଶିକ୍ଷା ପ୍ରତି ୰ ମହାତ୍ମାଙ୍କର ଯେଉଁ ସ୍ନେହାନୁକୂଳ ଦୃଷ୍ଟି ଥିଲା, ତଦ୍ଯୋଗେ ଏ ଦରିଦ୍ର ବ୍ରାହ୍ମଣ ସଂସ୍କୃତ ଏବଂ ଆୟୁର୍ବ୍ବେଦ ଶିକ୍ଷା କରି ଜୀବନକୁ କୃତାର୍ଥ ମଣୁଅଛି । ଆଜ ସେହି ଶିକ୍ଷାକୃତଜ୍ଞତାର ନିଦର୍ଶନ ସ୍ୱରୂପ ଏହି ଚିକିତ୍ସାବିଷୟକ

"କୌତୁକ ଘଟକ" କାବ୍ୟ ଗ୍ରନ୍ଥଟି ସ୍ୱଦେଶ ସ୍ୱର୍ଗୀୟ ମହାପୁରୁଷଙ୍କ ନାମ ସ୍ମରଣରେ ଉଦ୍ଭାସିତ ହୋଇଅଛି। ତେଣୁ ଏହା ଗର୍ବ ବୋଧରେ ଆଜି ଶ୍ରୀହଜୁରଙ୍କ ଶ୍ରୀକରକମଳରେ ସମର୍ପଣ କରି ଚିରକୃତଜ୍ଞ ଏବଂ ଆନନ୍ଦିତ ହୋଇଅଛି। ଇତି।

କଟକ।
୧।୧୦।୨୮

ସ୍ନେହପାଳିତ
ବିନୀତ
ଶ୍ରୀ ବାଲୁକେଶ୍ୱର ଆଚାର୍ଯ୍ୟ।

# ଭୂମିକା ।

ଉତ୍କଳରେ ଆୟୁର୍ବେଦୀୟ ଚିକିତ୍ସା ଗ୍ରନ୍ଥର ଅଭାବ ନାହିଁ । କେବଳ ଉତ୍ସାହୀ ଚିକିତ୍ସକଙ୍କର ଏକାନ୍ତ ଅଭାବ ପରିଲକ୍ଷିତ ହେବାରୁ ପ୍ରୋକ୍ତ ଗ୍ରନ୍ଥମାନଙ୍କ ପ୍ରକାଶ ଓ ପର୍ଯ୍ୟାଲୋଚନା ସମ୍ବନ୍ଧରେ ବହୁତର ତ୍ରୁଟି ଦେଖାଯାଏ । ପ୍ରାଚୀନ ବୈଦ୍ୟରାଜଙ୍କ ସ୍ୱଚିକିତ୍ସା ପ୍ରଣାଳୀ-ସମ୍ଭୂତ ଦ୍ରବ୍ୟ ଉପାଦେୟ ଔଷଧଗୁଡ଼ିକ ଲିପିବଦ୍ଧ ହୋଇ ପୋଥୀ ଆକାରରେ ଏ ପ୍ରଦେଶର ନାନାସ୍ଥାନରେ ସଞ୍ଚିତ ରହି କାଳକ୍ରମେ କୀଟଦଷ୍ଟ ଅଥବା ବଲ୍ମୀକମୁଖାଶ୍ରିତ ହୋଇ ନଷ୍ଟପ୍ରାୟ ହୋଇଅଛି ଏବଂ ହେଉଅଛି । ଏହି ନଷ୍ଟଗ୍ରନ୍ଥର ଉଦ୍ଧାର ଲାଗି ବହୁ ଯତ୍ନ ଓ ଅର୍ଥ ଅତ୍ୟାବଶ୍ୟକ ହେଲେହେଁ ଆଧୁନିକ ଉତ୍କଳବାସୀ ଜାତୀୟ ହିତକର ଅନୁଷ୍ଠାନରେ ଯେପରି ଉଦାସୀନ ଏ ବିଷୟରେ ମଧ୍ୟ ତଥାକଥିତ ପଶ୍ଚାତ୍‌ପଦ । ଶିକ୍ଷାର ଅଭାବ ଏ ସବୁ ତ୍ରୁଟିର ମୂଳ କାରଣ । ସୁଖର ବିଷୟ, ବର୍ତ୍ତମାନ ନାନାବିଧ ପାଶ୍ଚାତ୍ୟ ଶିକ୍ଷାର ସୃଷ୍ଟିପରେ କେତେକଦିନ ହେଲା ଆୟୁର୍ବେଦୀୟ ଶିକ୍ଷା ପ୍ରତି ସରକାରଙ୍କ ସୁଦୃଷ୍ଟି ପଡ଼ିଅଛି । ତେଣୁ ଏ ଦେଶବାସୀ ଚିକିତ୍ସାଗ୍ରନ୍ଥ ଅଧ୍ୟୟନ କରିବାକୁ ଆରମ୍ଭମାତ୍ର କରିଅଛନ୍ତି । ଏହି ନବୋଦ୍ୟମରେ ସେହି ଚିକିତ୍ସା ବିଦ୍ୟାର୍ଥୀଙ୍କୁ ଉତ୍ସାହ ଓ ସହାନୁଭୂତି ପ୍ରଦର୍ଶନ କରାଗଲେ ଦେଶର ଆରୋଗ୍ୟମୂଳକ କଲ୍ୟାଣ ସଙ୍ଗେ ସେହି ଲୁପ୍ତ ବୈଦ୍ୟକ ଗ୍ରନ୍ଥର ଉଦ୍ଧାର ଏବଂ ସମାଦର ଅବଶ୍ୟମ୍ଭାବୀ, ଏଥିରେ ସନ୍ଦେହ ହୋଇ ନ ପାରେ ।

ପୂର୍ବେ ଏଦେଶରେ ରାଜାମାନଙ୍କ ସନ୍ନିଧିରେ ସୁବିଜ୍ଞ ବୈଦ୍ୟରାଜମାନେ ବହୁ ସମ୍ମାନ ଏବଂ ବୃତ୍ତି ଲାଭ କରି ନିଜର କୃତିତ୍ୱ ବିବିଧାକାରରେ ଦେଖାଇ ଯାଇଥିବାର ପ୍ରମାଣ ମିଳୁଅଛି । ଦେଶ ପ୍ରଚଳିତ ଜାତୀୟ ରୋଗ ସମ୍ବନ୍ଧରେ ସୁଚିନ୍ତିତ ଦ୍ରବ୍ୟ ଔଷଧମାନଙ୍କୁ ପ୍ରଥମେ ପାଚନ, ପରେ ରସ ପ୍ରୟୋଗ ବିଧି ଅନୁସାରେ ପ୍ରକାଶ କରି ସେମାନେ ନିଜର କବିତା ଓ ପାଣ୍ଡିତ୍ୟର ପରାକାଷ୍ଠା ପ୍ରଦର୍ଶନ କରି ଯାଇଛନ୍ତି । ଆତୁର

ପକ୍ଷରେ ଔଷଧର କ୍ୱାଥ ହିତକର ହେଲେହେଁ ପ୍ରଥମ ପ୍ରୟୋଗରେ ତାହା ରୁଚିକର ହୋଇ ନ ଥାଏ । ତେଣୁ ବିଜ୍ଞ କିମ୍ବା କୁଶଳ ବୈଦ୍ୟରାଜ ଯେପରି କଟୁତିକ୍ତ କଷାୟୁକ୍ତ ପାଚନକୁ ସୁପେୟ କରିବାକୁ ରୋଗିସମ୍ମୁଖରେ ମନ୍ତ୍ର କିମ୍ବା କଥା ପ୍ରକ୍ଷେପ କରି ରୋଗିର ମନ ଯେପରି ଆକର୍ଷଣ କରି-ଥାନ୍ତି, ସେହିପରି ପ୍ରାଚୀନ ଉତ୍କଳ ବୈଦ୍ୟରାଜମାନେ ଉକ୍ତ ଚିକିତ୍ସା-ବିଷୟକ ବିଦ୍ୟାଧ୍ୟୟନ ସୁରୁଚି ସୁଖପ୍ରଦ ହେବା ଲାଗି ଯଶୋଃର୍ଥଯୁକ୍ତ ମଧୁମୟୀ କାନ୍ତାସମ୍ମିତ ବାକ୍ୟାବଳୀରେ କାବ୍ୟ ରଚନା କରି ବିଦ୍ୟାର୍ଥିଙ୍କ ଚିତ୍ତାକର୍ଷଣ କରିଅଛନ୍ତି । ଭାରତରେ ଏ ପର୍ଯ୍ୟନ୍ତ ଏ ଶ୍ରେଣୀୟ କବି ଓ କବିରାଜ ଲୋଲମ୍ବରାଜ ଏକମାତ୍ର ପରିଚିତ ହୋଇଥିଲେ । କିନ୍ତୁ ଆମ୍ଭ ଉତ୍କଳରେ ତାଙ୍କପରି ସୁରସିକ ସୁଚତୁର ବୈଦ୍ୟରତ୍ନ କେତେ ଯେ ଜନ୍ମଗ୍ରହଣ କରିଥିଲେ, ତାହା ଆମ୍ଭମାନଙ୍କୁ ଅବଶ୍ୟ ଜଣା ନ ଥିଲା । ବର୍ତ୍ତମାନ ଅନୁଗୁଳର ଜନୈକ ବ୍ରାହ୍ମଣ ଗୃହରୁ ଖଣ୍ଡେ ତାଳପତ୍ର ପୋଥୀ ପାଇ ଦେଖୁଅଛୁଁ ଯେ, ତାହା ଲୋଲମ୍ବରାଜଙ୍କ କୃତ "ବୈଦ୍ୟଜୀବନ" ପରି ଚିକିତ୍ସା ବିଷୟକ ଅନୁପମ କାବ୍ୟ ଗ୍ରନ୍ଥ । ଏହା "କୌତୁକ-ଦପକ" କାବ୍ୟ ନାମରେ ଅଭିହିତ । କବିରାଜ ରାଜବୈଦ୍ୟ ଶ୍ରୀ ନାରାୟଣ ଷଡ଼ଙ୍ଗି ଶର୍ମା ଏହି ଗ୍ରନ୍ଥ ରଚୟିତା । ଏ କବିଙ୍କର ସମୟ ଓ ସ୍ଥାନାଦି ବିବରଣ ଅନ୍ୱେଷଣ କରି ଏପର୍ଯ୍ୟନ୍ତ ନ ପାଇବାରୁ ତାଙ୍କ ଗ୍ରନ୍ଥ ପ୍ରକାଶ ପୂର୍ବରୁ ଜୀବନୀ ସମ୍ବନ୍ଧରେ କୌଣସି କଥା ଉଲ୍ଲେଖ କରିବାକୁ ଅକ୍ଷମ ହୋଇ ଦୁଃଖିତ ରହିଅଛୁଁ । ଆଶାକରୁଁ, ଯଦି କେହି ପରିଚୟ ପାଇଥାନ୍ତି, ତାହା ପ୍ରକାଶ କରିବାକୁ କୁଣ୍ଠିତ ହେବେ ନାହିଁ । ପରବର୍ତ୍ତି ସଂସ୍କରଣରେ ଯେପରି ପ୍ରକାଶିତ ହୋଇପାରେ ଏଥିପାଇଁ ଅନୁରୋଧ କରୁଅଛୁଁ ।

ଏହି ଗ୍ରନ୍ଥର ଉପାଦେୟତା ସମ୍ବନ୍ଧରେ ବିଶେଷ କହିବା ଅନାବଶ୍ୟକ । ଏଥିଲିଖିତ ଔଷଧଗୁଡ଼ିକ ପଲ୍ଲିସ୍ଥିତ-ସହଜଲଭ୍ୟ ଏବଂ ସୁକର । ଘରେ ବସି ବିନା ବୈଦ୍ୟରେ ଗ୍ରାମମଧ୍ୟରୁ ଚେରମୂଳ ସଂଗ୍ରହ କରି କେବଳ ପାଚନ ପ୍ରୟୋଗରେ ରୋଗମୁକ୍ତ ହେବାର ପନ୍ଥା କବି ଦେଖାଇ ଯାଇଛନ୍ତି । ଏହି କବିଙ୍କ କାବ୍ୟର ଟୀକାକାର ଜନୈକ ଗୋପୀନାଥ

ନାମା କବିରାଜ ଏହାର ଅନୁରୂପ "ରସମଞ୍ଜରୀ"ନାମକ ଖଣ୍ଡିଏ କାବ୍ୟ ମଧ୍ୟ ରଚନା କରି ରସ ବିଷୟରେ ବୋଗମୁକ୍ତିର ମାର୍ଗ ନିର୍ଦ୍ଦେଶ କରି- ଅଛନ୍ତି । ଉକ୍ତ କବିଙ୍କ ଚରିତ ଅବଜ୍ଞାତ ହେଲେହେଁ ଗ୍ରନ୍ଥ ପରିଚୟରୁ ସେମାନେ ଲୋଲମ୍ବରାଜଙ୍କ ସମକକ୍ଷ ବୋଲି ସ୍ପଷ୍ଟ ପ୍ରତୀୟମାନ । ଲୋଲମ୍ବଙ୍କ 'ବୈଦ୍ୟଜୀବନ' ଅପେକ୍ଷା ଏହି 'କୌତୁକ-ଚିନ୍ତାମଣି' ଓ ରସମଞ୍ଜରୀରେ ଲେଖା ପ୍ରଣାଳୀର କୌଣସି ତାରତମ୍ୟ ନ ଥିଲେହେଁ ଔଷଧ ନିର୍ଦ୍ଧାରଣରେ ନବୀନତା ଏବଂ ବିଶେଷତ୍ୱ ଥିବାର ଦେଖାଯାଏ । ସୁତରାଂ ଏହା ଆମ୍ଭମାନଙ୍କର ବିଶେଷ ଉପାଦେୟ ଓ ଆଦରଣୀୟ ହେବ । ବହୁ ପରିଶ୍ରମ ଓ ଅର୍ଥବ୍ୟୟରେ ଏହି "କୌତୁକ-ଚିନ୍ତାମଣି କାବ୍ୟ" ଖଣ୍ଡିକ ପ୍ରଥମରେ ପ୍ରକାଶ କରାଗଲା । ଏହାର ଆଦର ଏବଂ ପ୍ରଚାର ବାହୁଲ୍ୟ ଦେଖି ଅପର ଅପ୍ରକାଶିତ ଗ୍ରନ୍ଥଗୁଡ଼ିକ ପ୍ରକାଶ କରିବାପାଇଁ ବାସନା ରଖିଅଛୁଁ ।

ପରିଶେଷରେ ବକ୍ତବ୍ୟ ଏହି ଯେ, ଏହି ଗ୍ରନ୍ଥଦ୍ୱୟ ବିଶେଷ ଅପରିଶୁଦ୍ଧ, ଅପାଠ୍ୟ ଓ ଅବିଜ୍ଞେୟ ଅବସ୍ଥାରେ ଥିଲେହେଁ ଏହାର ସଂଶୋଧନ ବିଷୟରେ ଉତ୍କଳର ବର୍ତ୍ତମାନ ସୁକବି ଓ ସୁପଣ୍ଡିତ କବି- ଚନ୍ଦ୍ରୋପାଧିକ ଶ୍ରୀ ଭୁବନେଶ୍ୱର ରଥଶର୍ମା ଏବଂ ପଣ୍ଡିତ ଶ୍ରୀ ବାସୁଦେବ ରଥ କାବ୍ୟତୀର୍ଥ ମହୋଦୟ ପ୍ରଗାଢ଼ ଯତ୍ନ, ଉତ୍ସାହ ଏବଂ ସହାନୁଭୂତି ପ୍ରକାଶ କରିବାରୁ ଏହା ନବଜୀବନ ଓ ନୂତନ କଳେବର ଧାରଣ କରି ସୁବୋଧ, ସୁଖପାଠ୍ୟ ଏବଂ ସର୍ବାଙ୍ଗସୁନ୍ଦର ହୋଇଅଛି । ବିଶେଷତଃ ଅନୁବାଦରେ ସଂସ୍କୃତ ଶ୍ଳୋକଗୁଡ଼ିକର ଦୁର୍ବୋଧ ପ୍ରତ୍ୟେକ ପଦର ଭିଣଦାର୍ଥ ( ) ଏପ୍ରକାର ବନ୍ଧନୀ ମଧ୍ୟଗତ କରାଯାଇ ଥିବାରୁ ସାଧା- ରଣ ପାଠକଙ୍କର ମଧ୍ୟ ବୋଧଗମ୍ୟ ହୋଇଅଛି । ତେଣୁ ଏହାର ସଂସ୍କାରକ ପଣ୍ଡିତଦ୍ୱୟଙ୍କ ଠାରେ ଆମ୍ଭେ ବିଶେଷ ଭାବରେ ଚିରକୃତଜ୍ଞ । ଯାହାହେଉ, ଏହି କାବ୍ୟ ପ୍ରକାଶରେ ଜନସମାଜର କିଞ୍ଚିତ୍ କଲ୍ୟାଣ ସାଧିତ ହେଲେ, ଶ୍ରମ ସଫଳ ବୋଧ କରିବୁଁ, ଏବଂ "ରସମଞ୍ଜରୀ" ପ୍ରକାଶ

ଲଭି ଶୀଘ୍ର ପ୍ରୋତ୍ସାହିତ ହେବୁ । ଭ୍ରମ ପ୍ରମାଦ ଥାଇପାରେ । ତଥାପି ଭକ୍ତ ପାଠକ ଓ ବୈଦ୍ୟରାଜଙ୍କ ଆଗ୍ରହ ଦୃଷ୍ଟିରେ ପ୍ରଥମ ସଂସ୍କରଣରେ ତାହା ପରିମାର୍ଜ୍ଜନୀୟ । ଇତି ।

କଟକ
ତା ୩୧।୮।୧୯୨୪ ମସିହା
। ମୁ । ଭାଦ୍ର ଶୁକ୍ଳ ପ୍ରତିପଦ
ରବିବାର, ଶକାବ୍ଦ ୧୮୪୬ ।

ବିନୀତ, ପ୍ରକାଶକ
ଶ୍ରୀ ବାଲୁକେଶ୍ୱର ଆଚାର୍ଯ୍ୟଶର୍ମା ।



# ସୂଚୀ-ପତ୍ର ।



ବିଷୟ ... ପୃଷ୍ଠାଙ୍କ ।

| ବିଷୟ | | | ପୃଷ୍ଠାଙ୍କ । |
|---|---|---|---|
| ଚକ୍ଷୁରୋଗର ଚିକିତ୍ସା | | | ୫୪ |
| ଉଦାବର୍ତ୍ତ ଓ ଆନାହରୋଗର ଚିକିତ୍ସା | ... | | ୫୫ |
| ଆନାହାରି ରସ | ... | | ,, |
| ଗୁଳ୍ମରୋଗର ଚିକିତ୍ସା | ,, | ,, | ୫୬ |
| ସର୍ବଗୁଳ୍ମହର ପିପ୍ପଳ୍ୟାଦି ଚୂର୍ଣ୍ଣ | ,, | ,, | ୫୭ |
| ହୃଦ୍ରୋଗ ଚିକିତ୍ସା | ,, | ,, | ୫୮ |
| ମୂତ୍ରକୃଚ୍ଛ୍ରରୋଗର ଚିକିତ୍ସା | ,, | ,, | ,, |
| ଅଶ୍ମରୀରୋଗର ଚିକିତ୍ସା | ,, | ,, | ୫୯ |
| ମେହରୋଗ ରୋଗ ଚିକିତ୍ସା | ,, | ,, | ,, |
| ସ୍ଥୌଲ୍ୟରୋଗର ପ୍ରତିକାର | ,, | ,, | ୬୦ |
| ଉଦର ରୋଗ-ପ୍ରତିକାର | ,, | ,, | ୬୧ |
| ଶୋଥ ରୋଗେ ପ୍ରୟୋଗଦ୍ୱୟ | ,, | ,, | ,, |
| ବୃଦ୍ଧିରୋଗହର କଷାୟ | ,, | ,, | ୬୨ |
| ଶ୍ଳୀପଦହର ପ୍ରୟୋଗ | ,, | ,, | ୬୩ |
| ବିଦ୍ରଧିହର କଷାୟ | ,, | ,, | ,, |
| ବ୍ରଣାଦି ନାଶକ ଚିକିତ୍ସା | ,, | ,, | ୬୪ |
| ସିନ୍ଦୂରାଦି ତୈଳ | ,, | ,, | ,, |
| ଭଗ୍ନରୋଗ ଚିକିତ୍ସା | ,, | ,, | ୬୫ |
| ଭଗନ୍ଦର ରୋଗ ଚିକିତ୍ସା | ,, | ,, | ,, |
| ଉପଦଂଶ ରୋଗ ,, | ,, | ,, | ୬୬ |
| କୁଷ୍ଠରୋଗ ,, | ,, | ,, | ,, |
| କୋଠରୋଗ ,, | ,, | ,, | ୬୭ |
| ଅମ୍ଳପିତ୍ତ ରୋଗ ,, | ,, | ,, | ,, |
| ବିସର୍ପାଦି ରୋଗ ,, | ,, | ,, | ୬୮ |
| ମୁଖରୋଗ ,, | ,, | ,, | ୬୯ |

ଶ୍ରୀଃ

# କୌତୁକ-ଦୀପକଂ କାବ୍ୟଂ ।



## ପ୍ରଥମଃ ସର୍ଗଃ ।

### ମଙ୍ଗଳାଚରଣମ୍ ।

ରାଧାମାଧବପାଦପଙ୍କଜଯୁଗଂ କୃତ୍ୱୋରବାଦ୍ୟ ପ୍ରିୟଂ
କାନ୍ତୋକ୍ତ୍ୟା କୁତୂହଳ-ପ୍ରଦୀପକମିଦଂ ନାନାବିଧଚ୍ଛନ୍ଦସା ।
ବୈଦେଧ୍ୟାମୃତସାର ଚତୁତମସଃ ପ୍ରଧ୍ୱଂସଶୌଣ୍ଡଂ ପ୍ରତି-
ଶ୍ଳୋକଂ କୌତୁକକାରକଂ ସ୍ଫୁଟପଦଂ ପ୍ରବ୍ୟକ୍ତସାରଗ୍ରହଂ ।୧।

ଭାଷାର୍ଥ—ଗ୍ରନ୍ଥକାର ଏହି ଶ୍ଳୋକରେ ମଙ୍ଗଳାଚରଣ କରି ଗ୍ରନ୍ଥର ନାମକରଣ ଏବଂ ପ୍ରଶଂସା କରୁଅଛନ୍ତି । "ଆମ୍ଭେ ନାରାୟଣ ନାମକ କବି ଶ୍ରୀ ରାଧାମାଧବଙ୍କ ପାଦପଦ୍ମଯୁଗଳରେ ପ୍ରଣାମ କରି ଏହି ଚିତ୍ରକାଗ୍ରନ୍ଥ ରଚନା କରୁଅଛୁଁ । ଏହା ସୁଲଳିତ ହୀପୁଲଭ ବଚନାବଳୀରେ ମନୋହର ଏବଂ କୌତୂହଳପ୍ରଦ ହୋଇଥିବାରୁ ଏହାର ନାମ କୌତୁକ-ଦୀପକ କାବ୍ୟ ହୋଇଅଛି । ଏଥିରେ ଶ୍ଳୋକଗୁଡ଼ିକ ନାନାପ୍ରକାର ବୃତ୍ତରେ ରଚିତ । ପ୍ରତ୍ୟେକ ଶ୍ଳୋକରେ ଯେଉଁସବୁ ଔଷଧି ପ୍ରକାଶିତ ହୋଇଅଛି, ତାହା କୌତୁକାବହ ଲୋକସମ୍ମତ ସକଳ ଦେଶଦଦ୍ଦତ

ଓ ସୁଖୋପାସ୍ଥ ସୁସିଦ୍ଧ ହେବାରୁ ମୂର୍ଖ ବୈଦ୍ୟମାନଙ୍କର ଅଜ୍ଞକଧ୍ୟ ସକାଶ ହୋଇଅଛୁ ॥ ୧ ॥"

କଶ୍ଚିତ୍କାନ୍ତାଂ ରୁହସିରସିକୋ ଧର୍ମମୋକ୍ଷାର୍ଥକାମାନ
ରୋଗୈରନ୍ତ୍ୟା ବଦତ ଲଳନେ ! ମତ୍ତମାତଙ୍ଗଲୀଳେ !
ପ୍ରାପ୍ତୁଂ ଦେହଃ କମଳଲପନେ ! ତତ୍ପ୍ରିୟାବପ୍ରପୃଷ୍ଟଃ
କଶ୍ୟଃ କେତେ କଥୟ ପ୍ରଶସ୍ତିନ୍ ! ତେ ଜ୍ୱରଦ୍ୟା ବଷାନ୍ତାଃ ॥୨॥

**ଭାଷାର୍ଥ**—କୌଣସି ରସିକ ପୁରୁଷ ଏକାନ୍ତରେ ନିଜର କାନ୍ତାକୁ ସମ୍ବୋଧନ କରି କହୁଅଛୁ, "ହେ ମତ୍ତଗଜଗମନେ ! ହେ ପଦ୍ମନନେ ! ହେ ସୁନ୍ଦରି ! ଏହି ପାଞ୍ଚଭୌତିକ ଦେହ ରୋଗ-ଶୂନ୍ୟ ହେଲେ ଧର୍ମାର୍ଥକାମମୋକ୍ଷରୂପ ଚତୁର୍ବର୍ଗଫଳ ପାଇବାକୁ ସମର୍ଥ ହୁଏ ।" ତାହା ଶୁଣିକରି ପ୍ରିୟା ପଚାରିଲେ, "ହେ ପ୍ରିୟତମ ସେହି ରୋଗଗୁଡ଼ିକ କଣ ? ଏବଂ କେତେପ୍ରକାର ?" ପ୍ରିୟ ପ୍ରିୟାଦ୍ୱାରା ଏପରି ପୃଷ୍ଟ ହୋଇ କହୁଅଛୁ ଯେ, "ସେହି ରୋଗ ସକଳ ଜ୍ୱରଠାରୁ ଆରମ୍ଭ କରି ବିଷରୋଗ ପର୍ଯ୍ୟନ୍ତ ଚଉଷଠି ପ୍ରକାର । ୨ ।"

କନକଚମ୍ପକଦ୍ରୁମରଦେହେ ! ଜ୍ୱରଗଦଃ ପ୍ରବରଃ ଖଲୁ ତେଷାଂ ।
ଦ୍ୱିରଦରାଜଗତେ ! ପ୍ରତିକାରଂ ପ୍ରଥମତଃ ଶୃଣୁ ରୋଗବରସ୍ୟ ଚ ॥୩॥

**ଭାଷାର୍ଥ**—ହେ ସ୍ୱର୍ଣ୍ଣଚମ୍ପକବୃକ୍ଷ ଉଜ୍ଜ୍ୱଳଶରୀରେ ! ହେ ଗଜରାଜଗମନେ ! ସେହି ସମସ୍ତ ରୋଗମାନଙ୍କ ମଧ୍ୟରେ ଜ୍ୱରରୋଗ ପ୍ରଧାନ ଅଟେ ! ଅତଏବ ତୁମ୍ଭେ ପ୍ରଥମରେ ସେହି ଜ୍ୱରରୋଗର ଚକିତ୍ସା ବିଷୟ ଶ୍ରବଣ କର । ୩ ।

## ଇଦାନୀଂ ଜ୍ୱରସ୍ୟୋପ୍ତତ୍ତିମାହ ।

ଦକ୍ଷପ୍ରଜାପତିକୃତାଦପମାନଯୋଗା-
ଦ୍ରୋଷଂ ଜଗାମ୍ଭି କଳାତ୍ମକ ଶଙ୍କରସ୍ୟ ।

ଭୂତପ୍ରଲେପିତତନୁସ୍ତ୍ରିପୁରାନ୍ତକସ୍ୟ
ଜାତୋ ଗତସ୍ୟ ଦହନାତ୍ ପ୍ରବରୋ ଗଦାନାଂ । ୪ ।

**ଭାଷାର୍ଥ**—ବର୍ତ୍ତମାନ ଜ୍ୱରର ଉତ୍ପତ୍ତି ବିଷୟ କହୁଅଛନ୍ତି । ପୂର୍ବକାଳରେ ଦକ୍ଷପ୍ରଜାପତିଙ୍କ ଯଜ୍ଞରେ ଅପମାନିତ ଓ କ୍ରୁଦ୍ଧ ଦେବଦେବ ମହାଦେବଙ୍କ କ୍ରୋଧାଗ୍ନିରୁ ଜ୍ୱରର ଉତ୍ପତ୍ତି ହୋଇଥିଲା । ସେହି ଜ୍ୱର ଭସ୍ମଲିପ୍ତଦେହ, ତ୍ରିପାଦ, ନବଲୋଚନ, ତ୍ରିଶିର ଏବଂ ଷଡ଼୍‌ଭୁଜ ଆକାର ଧାରଣ କରି ରୋଗମାନଙ୍କର ଅଗ୍ରଣୀ ହୋଇଅଛନ୍ତି ।

## ଇଦାନୀଂ ଅବସ୍ଥା-ବିଶେଷାର୍ଥଂ ଜ୍ୱରସ୍ୟ ନିବଦ୍ଧ ଲକ୍ଷଣମାହ ।

ଆସପ୍ତରାତ୍ରମତନୁଜ୍ୱରମାହୁରଗ୍ର୍ୟେ !
ନୈତିହ୍ୟଂ ଦଶାଦଶଦିନଂ ଖଳୁ ମାଧ୍ୟମଂ ହେ !
ଭ୍ରୂଭଙ୍ଗନିର୍ଜ୍ଜିତ ମହାଚର ଚିତ୍ତବାରେ !
ତସ୍ମାତ୍ପୁରାତନମମୁଷ୍ୟ ବଦନ୍ତି ମାନଂ । ୫ ।

**ଭାଷାର୍ଥ**–ବର୍ତ୍ତମାନ ଅବସ୍ଥା ବିଶେଷ ନିମିତ୍ତ ଜ୍ୱରର ନୂତନାଦି ଲକ୍ଷଣମାନ କହୁଅଛନ୍ତି । ହେ କାମଜ୍ୱରନିବାରକାଲିଙ୍ଗନେ ! ହେ ସର୍ବଲୋକଚିତ୍ତବଶକରେକ୍ଷଣେ ! ହେ ପ୍ରିୟେ ! ତୁମ୍ଭେ ଅଭିମାନ ପରିତ୍ୟାଗ କରି ଶ୍ରବଣ କର । ଏହି ଜ୍ୱରରୋଗ ସାତଦିନ ପର୍ଯ୍ୟନ୍ତ ନୂତନ ଅର୍ଥାତ୍ ତରୁଣ, ସାତଦିନଠାରୁ ଦଶଦିନ ପର୍ଯ୍ୟନ୍ତ ମଧ୍ୟମ, ତଦନନ୍ତର ପୁରାଣ ଅର୍ଥାତ୍ ଜୀର୍ଣ୍ଣ-ଜ୍ୱର ବୋଲି ଜାଣି ମନେ ରଖ । ୫ ।

## ନନୁ ତରୁଣଜ୍ୱରେ କିଂ କାର୍ଯ୍ୟମିତ୍ୟତ ଆହ ।

ଅମୁଷ୍ୟ ପୂର୍ବେଽନଶନଂ ହି ମଧ୍ୟମେ ଚ ପାଚନଂ ମାରକବଲ୍ଲିବୀକ୍ଷଣେ !
ବିଧୀୟତା ମୌଷଧମାହୁ କାର୍ମଣଂ ତତୋଽନ୍ତିମେ ହେ ରମଣୀସୁଲକ୍ଷଣେ !

**ଭାଷାର୍ଥ**—ତରୁଣ ( ନୂତନ ) ଜ୍ୱରରେ କଣ କର୍ତ୍ତବ୍ୟ ତାହା କହୁଅଛି ! ହେ କାମପୀଡ଼ାକରବଲ୍ଲେକନେ ! ହେ ରମଣୀୟକ୍ଷଣେ, ହେ ମଧ୍ୟମେ ! ଏହି ଜ୍ୱରର ପ୍ରଥମାବସ୍ଥାରେ ଉପବାସ, ମଧ୍ୟମାବସ୍ଥାରେ ପାଚନ, ଜୀର୍ଣ୍ଣାବସ୍ଥାରେ ଔଷଧାଦି ବ୍ୟବହାର କର୍ତ୍ତବ୍ୟ ।

## ଇଦାନୀଂ ଜ୍ୱରହର କଷାୟାଦଷୁ ତରୁଣଜ୍ୱରହର-କଷାୟମାହ ।

ଗୀର୍ବାଣବେଷଣଜଗଦ୍ଧିକ କଣ୍ଟକାଖ୍ୟ—
ତୋୟଂ ବିପାଚିତମିଦଂ ହରତ କ୍ଷଣେନ ।
ସାର୍ଦ୍ଧଂ ଭୁକ୍ତ୍ୱା ମଧୁଯୁତଂ ଚତ କାମଦେବଂ
କନ୍ତ୍ୱା ଜ୍ୱରଂ ନୂତନକଂ କୁଷକୋଟିତଭେ !। ୭ ।

**ଭାଷାର୍ଥ**—ବର୍ତ୍ତମାନ ଜ୍ୱରନାଶକ ପାଚନମାନଙ୍କ ମଧ୍ୟରେ ତରୁଣ ଜ୍ୱରହର କଷାୟ କହୁଅଛି । ହେ କୁଶାଗ୍ରବୁଦ୍ଧେ ! ଯେପରି ତୁମ୍ଭ ସହିତ ରତ୍ୟୁତ୍ସବରେ ମାତ ବସନ୍ତସଖା ସହିତ ଅଭିନବ କନ୍ଦର୍ପକୁ ଜୟ କରି ମୁଁ କୁଶଳୀ ହୁଏଁ, ସେହିପରି ଗୀର୍ବାଣ (ଦେବଦାରୁ), ବେଷଣ(ଧନିଆ),ଜଗତ୍(ଶୁଣ୍ଠୀ), ଦ୍ୱିକକଣ୍ଟକାରୀ (ଅଙ୍କସନ୍ତି ଓ ଲଟାବେଙ୍କୋଳି) ଏମାନଙ୍କଦ୍ୱାରା ପାଚନ ପ୍ରସ୍ତୁତ କରି ତହିଁରେ ମଧୁ ପ୍ରକ୍ଷେପ ପୂର୍ବକ ସେବନ କଲେ କ୍ଷଣକମଧ୍ୟରେ ତାହା ନୂତନ ଜ୍ୱର ହରଣ କରେ । ୭ ।

## ସର୍ବଦୋଷପ୍ରାଧାନ୍ୟାତ୍ ପ୍ରଥମଂ ବାତ ଜ୍ୱର-ପ୍ରତିକାରମାହ ।

ବାଣୀବାଣାବରଦରପୁଜଂ ରୋଗମୁଖ୍ୟଂ ଯଥା ତେ
ତଦ୍ ବହୁ କାନ୍ତେ ! ହରତ ଚ ଜଳଂ ବସ୍ତିଚ୍ଛିନ୍ନା କଣାଢ୍ୟଂ ॥
ଵମେ ! ସମପ୍ରିତ୍ୟୁତମନଭେ ! ବାଥ ଚ୍ଛିନ୍ନାବିଦ୍ ଯାସେ-

ର୍ବାଥୋ ଗୋପୀ ବଟପି ସମୁଧା ଯାସବାସ୍ୱନ୍ତକା ଶ୍ରୀଃ । ୮ ।
କ୍ୱାଥୋ ବଶ୍ୱାମୃତ ବୃହତିକା ଯୁଗ୍ମ କୈରାତ ତକ୍ରା-
କ୍ଷୁଦ୍ରାପାଥୋ ଧ୍ରୁବକସହିତଃ ଶାତକୁକ୍ଷି ! ପ୍ରଶୃଦ୍ୟାତ୍ ।
ତଦ୍ ବଦ୍ ବାମେ ! କମୃତ ସହସା ଶୋଥହୃଦ୍ଯାସ ଗୋପୀ-
ଛିନ୍ନାବଲ୍ଲୀମିସିସଗୁଡକଃ ସ୍ୱର୍ଣ୍ଣପୁଷ୍ପପ୍ରକାଶେ ! । ୯ ।

**ଭାଷାର୍ଥ**—ସଂସ୍ତ ଦୋଷ ପ୍ରଧାନଭାବରେ ଥିବାରୁ ପ୍ରଥମରେ ବାତଜ୍ୱର ପ୍ରତିକାର କହୁଅଛନ୍ତି । ହେ କାନ୍ତେ! ତୁମ୍ଭର ଈଷଦ୍ଧାସ କଟାକ୍ଷଯୁକ୍ତ ବାକ୍-ଶୃତୁସି କାମଜ୍ୱରକୁ ଯେପରି ନାଶକରେ, ବଶ୍ୱ (ଶୁଣ୍ଠୀ), ଛିନ୍ନା (ଗୁଳୁଚୀ),କଣାଗ୍ରିଂ (ପିପ୍ପଳୀ ମୂଳ) ଏ ତିନୋଟିରୁ ଦୁଇ-ତୋଳା ମାତ୍ର ନେଇ ଅର୍ଦ୍ଧସେର ଜଳରେ ସିଦ୍ଧକରି ଏକଛଟାଙ୍କି ଅବଶେଷ ରଖି ମଧୁ ପ୍ରକ୍ଷେପ କରି ସେବନ କଲେ ଉକ୍ତ ପାଚନ ସେହିପରି ବାତ ଜ୍ୱରକୁ ଶୀଘ୍ର ବିନାଶ କରେ । ପୁନଶ୍ଚ ହେ ସୀତାତୁଲ୍ୟେ ! ଛିନ୍ନା ( ଗୁଳୁଚୀ ) , ଅବ୍ଦ(ମୁଥା) ଯାସ (ଦୁରାଲଭା ) ଏମାନଙ୍କ ପାଚନ ପୂର୍ବପରି ମଧୁ ଓ ପିପ୍ପଳୀ ଚୂର୍ଣ୍ଣ ପ୍ରକ୍ଷିପ୍ତ ହୋଇ ସେବିତ ହେଲେ ବାତଜ୍ୱରକୁ ତତ୍କ୍ଷଣାତ୍ ନାଶକରେ । ଆଉ ମଧ୍ୟ ଗୋପୀବଟପି (ପୁଆଁଲଇ), ସମୁଧା ( ଗୁଳୁଚୀ ), ଯାସ ( ଦୁରାଲଭା ), ବାସ୍ୱନ୍ତକା (ବାଉଅଁଳା), ଶ୍ରୀ ( ବେଲଛେଲି ) ଏମାନଙ୍କ ପାଚନ ପୂର୍ବପରିମାଣରେ ପ୍ରସ୍ତୁତ କରି ସେବନ କଲେ ବାତଜ୍ୱର ବିନଷ୍ଟ ହୁଅଇ । ହେ କ୍ଷୀଣୋଦରି ! ବଶ୍ୱ (ଶୁଣ୍ଠୀ), ଅମୃତ (ଗୁଳୁଚୀ), ବୃହ-ତିକା ଯୁଗ୍ମ ( ଭେଙ୍ଗାଭେଜ ଓ ଲଟା ବେଙ୍କୋଳି ), କୈରା-ତତିକ୍ତା ( ଚିରେଇତା ), କ୍ଷୁଦ୍ରା ( ଅଙ୍କରାନ୍ତି ), ପାଥ, ( କୁରୁ-ବେଲ୍ଲି ), ଧ୍ରୁବକ ( ଶାଳପର୍ଣ୍ଣୀ ) ଏମାନଙ୍କର ପାଚନ ପୂର୍ବ-ପରି ପ୍ରସ୍ତୁତ କରି ସେବନ କଲେ ହଠାତ୍ ବାତ ଜ୍ୱର କମି-ଯାଏ । ହେ ବାମେ ! ହେ ସ୍ୱର୍ଣ୍ଣପୁଷ୍ପକାନ୍ତେ ! ଶୋଥହୃତ୍ ( ପୁନର୍ଣ୍ଣୀ ), ଯାସ (ଦୁରାଲଭା), ଗୋପୀ ( ପୁଆଁଲଇ), ଛିନ୍ନା-

ବକ୍ଷୀ ( ଗୁଳୁଚୀ ), ମିଷି ( ଶଲପ ) ଏମାନଙ୍କୁ ପୂର୍ବୋକ୍ତରେ ପାଚନ ପ୍ରସ୍ତୁତ କରି ପୁରୁଣା ଗୁଡରୁ ଯୁକ୍ତ ଓଜନ ପ୍ରକ୍ଷେପ ପୂର୍ବକ ସେବନ କଲେ ତନ୍ମୁହୂର୍ତ୍ତରେ ବାତଜ୍ୱର ଛାଡ଼ିଯାଏ । ୮ । ୯ ।

## ଅଥ ପିତ୍ତଜ୍ୱର-କଷାୟ ମାହ ।

ମାନଂ ହିତ୍ୱା ସପଦି ବଚନଂ ପଞ୍ଚବକ୍ତ୍ରୋଦରି ! ତ୍ୱଂ
କାନ୍ତେ ! କାନ୍ତଂ ତରୁଣ-ପଟଡଂ କୋମଳଂ ବ୍ରୂହି ଦେହି ।
ଛିନ୍ନା ହୈମାଳସୁତନୂଭବା ପର୍ପଟାନାଂ ପଟ୍ୟୋ ବା
ଛିନ୍ନାଭକ୍ଷ୍ୟୁତ୍ପଳ ସରସିଜା-ଗୋପିକାନାଂ ସର୍ଣ୍ଣୈତ୍ୟଂ । ୧୦ ।

କ୍ଷୌଦ୍ରେଣାକ୍ତଂ ସୁରପତଜନୁଃ କ୍ଷୌଣ୍ୟରକ୍ଷ୍ମୈଃ ପଟ୍ୟୋ ବା
ତଦବଦକ୍କାନ୍ତେ ! ଚରକ-ରଚତଂ କ୍ଷୌଦ୍ରଯୁକ୍ତଂ ଜଳଂ ବା ।
କାନ୍ତା ତକ୍ତା ଚରକ କଣ୍ଟକା ବେଦନା ସିହ୍ଵକକ୍ତ୍ରୈ—
ସ୍ଵଦ୍ବହ୍ନିଂ ବରଚତପଟ୍ୟୁଃ ଶର୍କରା କ୍ଷୌଦ୍ରଯୁକ୍ତଂ । ୧୧ ।
ଦ୍ରାକ୍ଷାତକ୍ତା ଚରକଜଳଦ ସୁଣ୍ଠିଛିନ୍ନାରୁହାଣାଂ
ତଦ୍ବତ୍ପାଥୋଽମୃତ କମଳନାଗରାହ୍ୱଣୀ ତଣ୍ଡୁଳତକ୍ତୈଃ-
କ୍ଷୌଦ୍ରୈଃ ସଦ୍ୟା ସହ କୁବଳୟୈ ର୍ବାଥ ଧାନ୍ୟାକତୋୟଂ
ପ୍ରାତଃ ପୀତଂ ସୁମୁଖି! ଶମୟେତ୍ପୈତ୍ତିକଂ ଶର୍କରାକ୍ତଂ । ୧୨

**ଭାଷାର୍ଥ**—! ଅନନ୍ତର ପିତ୍ତଜ୍ୱର ବିଷୟରେ ପାଚନ କହୁଅଛୁ । ହେ ସିହ୍ଵକଟି, କାନ୍ତେ ! ବର୍ତ୍ତମାନ ତୁମ୍ଭେ ଅଭିମାନ ତ୍ୟାଗକରି ତରୁଣପଟଡ ଏହି କାନ୍ତକୁ ( ମୋତେ ) କୋମଳ ଭାବରେ କଥା କହ ଏବଂ ଆଲିଙ୍ଗନ ଦାନ କର । ଛିନ୍ନା ( ଗୁଳୁଚୀ ), ହୈମାଳସୁତନୂଭବା ( ହରଡ଼ା ), ପର୍ପଟ ( ଘରପୋଡ଼ିଆ ), ଏମାନଙ୍କର ପାଚନ ପିତ୍ତଜ୍ୱରରେ ଦେବ । ପୁନଶ୍ଚ ଛିନ୍ନା ( ଗୁଳୁଚୀ ), ଲକ୍ଷ୍ମୀ ( ଲୋଧ ), ଉତ୍ପଳ-

( ନୀଳୋତ୍ପଳ ), ସରସିଜ୍ଞା ( ପଦ୍ମମୂଳ ), ଗୋପିକା ( ସୁଆଁ-ଲଇ ), ଏମାନଙ୍କ ପାଚନରେ କନ୍ଦ ମିଶାଇ ପିତ୍ତଜ୍ୱର-ରୋଗିକୁ ଦେବ । ପୁନଶ୍ଚ ସୁରପଠକନୁ ( ଇନ୍ଦ୍ରଯବ ), କ୍ଷୌଣ୍ୟରସ୍ତ୍ର ( ଚଗଇତା ) ଏ ଦୁଇଟିର ପାଚନ ମଧୁ ସହିତ; ହେ ତନ୍ୱି ! ଆଉ ମଧ୍ୟ ଚରକରଶେଚ (କେବଳ ଘରପୋଡଆ କ୍ୱାଥକୁ ) ମଧୁ ସହିତ ପିଇବାକୁ ଦେଲେ ପିତ୍ତଜ୍ୱର ନଷ୍ଟ ହୁଏ । ପୁନଶ୍ଚ କାନ୍ତା [ ଦୁବଲଶ ], ତକ୍ତା [ ଚଗଇତା ], ଚରକ ( ଘରପୋଡଆ ), କଣ୍ଟୁକା ( କଣ୍ଟକ୍ଷା ), ରୋହଣୀ ( ପ୍ରିୟଙ୍ଗୁ ), ଫହିବଜ୍ର ( ବାସଙ୍ଗ ) ଏମାନଙ୍କର ପାଚନ ମଧୁ ଓ କନ୍ଦ ସହିତ;ଏବଂ ଦ୍ରାକ୍ଷା, ତକ୍ତା ( ଚଗଇତା ), ଚରକ ( କ୍ଷେତ ପାପଡ଼ା = ଘରପୋଡ଼ିଆ ), ଜଳଦ ( ମୁଥା ), ସ୍ୱର୍ଣ୍ଣ (ସୁନାର ଅଠା), ଛିନ୍ନାରୁହା (ଗୁଳୁଚୀ) ଏମାନଙ୍କର ପାଚନ; ପୁନଶ୍ଚ ଅମ୍ବୁଦ (ମୁଥା), କମଳନୀ, (ପଦ୍ମପତ୍ର), ରୋହଣୀ (କଣ୍ଟକ୍ଷୀ), ତକ୍ତ (ଚଗଇତା), ତକ୍ତ (ଘରପୋଡ଼ିଆ), କୁବଳୟ (ନୀଳକଇଁ) ଏମାନଙ୍କର ପାଚନ ମଧୁସହିତ, ଆଉ ମଧ୍ୟ ଧନ୍ୟାକ୍ୱାଥ କନ୍ଦସହିତ ପ୍ରାତଃକାଳରେ ସେବନ କଲେ ପିତ୍ତ ଜ୍ୱର ନାଶ ହୁଅଇ । ୧୦ । ୧୧ । ୧୨ ।

## ଇଦାନୀଂ ପିତ୍ତଜ୍ୱରେ ଦାହଚକିତ୍ସା ମାହ ।

କାନ୍ତେ ! ହର୍ମ୍ୟେ ଶୟନ ମୁଚିତଂ ପିତ୍ତରୋଗାତୁରାଣାଂ
ଜ୍ୟୋତ୍ସ୍ନାପୂର୍ଣ୍ଣେ ବ୍ୟଜନମଲୟୋଚ୍ଛାମରାଣାଂ ପ୍ରବାତଂ ।
ଅଶ୍ଳେଷୋ ବା କୁବଳୟଦୃଶାଂ ହାଦୃଶାଂ ନମ୍ରବଲ୍ଲୀ-
ଫେନାଲେପୋ ବଦରଛଦନାଫେନକସ୍ୟ ପ୍ରଦେହଃ । ୧୩ ।
ଶାଣାକ୍ୱାଣେ ମଧୁରବଚନେ ! ଶୀତତୋୟାବସେକୋ
ଲେପୋଽବା ସ୍ୟାନ୍ନକସ୍ୟଜ ମିଦଂ ମିଶ୍ରସଙ୍ଗୋଽପି ଶସ୍ତଃ ।

ଶଯ୍ୟା ବା ସ୍ୟାତ୍ କ୍ଲବଲୟବଲ୍ଲି ର୍ନର୍ମିତା ପଞ୍ଚବୈର୍ବା
ନୂନଂ ବୀଣାମଧୁରବଚନେ ! ମାଳତୀମୁଖ୍ୟମାଳା । ୧୪ ।

ଭାଷାର୍ଥ—ହେ କାନ୍ତେ ! ପିତ୍ତଜ୍ୱରରୋଗିମାନଙ୍କର ଚନ୍ଦ୍ରକିରଣଯୁକ୍ତ ହର୍ମ୍ମ୍ୟ ଅର୍ଥାତ୍ କୋଠାଘରେ ଶୋଇବା ଉଚିତ । ତଥା, ଗୃମର ଓ ଦକ୍ଷିଣ ପବନ ସେବନ ପଥ୍ୟ । ଭୃଙ୍ଗପତ୍ର ଗାତ୍ରୋ-ପ୍ରଲେପଯୁକ୍ତା ସ୍ତ୍ରୀମାନଙ୍କର ଆଲିଙ୍ଗନ ମାତ୍ର ସେବନୀୟ; କିନ୍ତୁ ସମ୍ଭୋଗ ଅନୁଚିତ । ଆମ୍ବୁର ମଧ୍ୟ କମୂପତ୍ର ରସ, ବରକୋଳି ପତ୍ରରସ ଲେପ ଦେବାଲେ ପିତ୍ତଜ୍ୱରର ଉପଶମ ହୁଅଇ ! ହେ ମଧୁରବଚନେ ! ବୀଣାଧ୍ୱନି-ଶ୍ରବଣ, ଶୀତଳ-ଜଳ-ସେଚନ, ଚନ୍ଦନଲେପନ, ମିତଜଳସହିତ ପଳାଦ, କୁବଳୟ (ନୀଳକଇଁ) ପାଙ୍ଖୁଡ଼ା ବା ପତ୍ରଶଯ୍ୟା, ମାଳତୀ ମଲ୍ଲୀପ୍ରଭୃତିର ମାଳା, ଏମାନେ ପିତ୍ତଜ୍ୱରକୁ ବିନାଶ କରନ୍ତି ॥ ୧୩ । ୧୪ ।

## ଇଦାନୀଂ ବଳାସଜ୍ୱରହର କଷାୟ ମାହ ।

ହେ ଚନ୍ଦ୍ରଲ୍ଲୀମାଳା-ରୁଚିରକବରେ ! କୋକିଳବଚନେ !
ସ୍ତନାଢ୍ୟମାନମ୍ରେ ! ଚକିତହରିଣୀଶୃଙ୍ଗନୟନେ !
ହୃତାଶାରଶ୍ଲେଷ୍ମା-କଟୁକବଚମୁବା ପ୍ରତି ବିଷା—
ଚବବ୍ୟାଧୀତକ୍ତ-ପ୍ରଶ୍ରୁତ ବନଦାନାକ୍ଷ୍ମିରଗୃହ । ୧୫ ।
ବଳାହୋତ୍ଥା କୁଷ୍ଠି ବ୍ରଜତ ନଧନଂ ଚେଲ୍ଲପତେ !
ତତୋଅନ୍ଧାଣୀପତ୍ର ପ୍ରଶୃତବନପାନାତ୍ ସମଗଧାତ୍ ।
ତଥା ହିଙ୍ଗାସ୍ୟୋଦ୍ଧାଦଶଚରଣଫଳାତପସ୍ୟୋ
ବଚବାହାଛିଲ୍ଲାକଟୁକ ଯବତକ୍ତାନ୍ମଧୁଯୁତାତ୍ । ୧୬ ।

ଭାଷାର୍ଥ—ବର୍ତ୍ତମାନ କଫଜ୍ୱରନାଶକ ପାଚନ କହୁଅଛୁ । ହେ ମଲ୍ଲୀମାଳା-ଶୋଭିତ କବରେ ! ହେ ଶିଖିବଦଶନେ ! ହେ ସ୍ତନସ୍ତବନତେ ! ହେ • ଚକିତ-ହରିଣୀ-

ନେଫେ ! ହେ କାନ୍ତେ ! କଫଜ୍ୱରରେ ନିମ୍ନଲିଖିତ ପାଚନମାନଙ୍କୁ ପ୍ରୟୋଗ କରିବ । ହୁତାଶ ( ଚିତାମୂଳ ), ଅରିଷ୍ଟ ( ନିମ୍ବଛେଲି ), ଉମା ( ଦାରୁହଳଦି ), କଟୁକି, ବଚ, ମୁର୍ବାମୂଳ, ଅଟରୂଷା ( ଅରୁସୀ ), ଯବ (ଇନ୍ଦ୍ରଯବ), ବାଂଧୁ (କୁଡ଼), ତିକ୍ତା (ଚିରାଇତା) ଏହି ଦଶଟି ସମଭାଗରେ ମିଳିତ ଦୁଇତୋଳା, ଏଥି ସଙ୍ଗେ ଜଳ ୩୨ ତୋଳା ଦେଇ ସିଦ୍ଧ କରି ଅବଶିଷ୍ଟ ୪ ଗୁରିତୋଳା ରଖି ମରିଚଚୂର୍ଣ୍ଣ ଏକ ମଷା ପ୍ରକ୍ଷେପ କରି ପିଇବାକୁ ଦେବ । ଆଉ ମଧ୍ୟ ନିର୍ଗୁଣ୍ଡିପତ୍ର (ବେଗୁନିଆ ପତ୍ର) ଦୁଇତୋଳା ଉକ୍ତ ବିଧି ଅନୁସାରେ ସିଦ୍ଧ କରି ପିପ୍ପଳୀଚୂର୍ଣ୍ଣରେ ପ୍ରକ୍ଷା କରି ଦେବ । କିମ୍ବା ଦଶଚରଣ (ଦଶମୂଳ-ଅର୍ଥାତ୍ ବେଲଛେଲି, ଗମ୍ଭାରିଛେଲି, ପାଟେଳିଛେଲି, ଅଗବଧୁଛେଲି, ଫଣଫଣା-ଛେଲି, ଶାଳପର୍ଣ୍ଣୀ, କୃଷ୍ଣପର୍ଣ୍ଣୀ, ଅଙ୍କରାନ୍ତ, ଲଠାବେଙ୍କୋଳି, ଗୋଖର) ଏମାନଙ୍କର ପାଚନରେ ମଧୁ ଓ ପିପ୍ପଳୀ ଚୂର୍ଣ୍ଣ ପ୍ରକ୍ଷା କରି ପିଇବାକୁ ଦେବ । ଅଥବା ବରା (ତ୍ରିଫଳା-ହରିଡ଼ା, ବାହ୍ୱାଡ଼ା, ଅଁଳା) ବାସା (ବାସଙ୍ଗମୂଳ), ଛିନ୍ନା (ଗୁଳୁଚି), କଟୁକି, ଯବ (ଇନ୍ଦ୍ରଯବ), ତିକ୍ତା (ଚିରାଇତା) ଏମାନଙ୍କର ପାଚନକୁ ମଧୁ ଓ ପିପ୍ପଳୀ ଚୂର୍ଣ୍ଣରେ ପ୍ରକ୍ଷା କରି ପିଇବାକୁ ଦେଲେ କଫଜ୍ୱର ନାଶ ହୁଏ ॥ ୧୫ । ୧୬ ॥

## ଅଥ ବାତପିତ୍ତ-ଜ୍ୱର-ପ୍ରତିକାରମାହ ।

ମରୁତ୍ପିତ୍ତଂ ଜାତଂ ଜୟତି ସୁମୁଖୀଦଂ ଶୃତଜଳଂ
ବରାମୋଥ୍ରା ଦ୍ରାକ୍ଷା ମଧୁପତରୁବାସା ବଟପିନାଂ ।
ତଥା ବାକୈରାତାମଳକ-ହିମକା-ଯାସକ ଜଳଂ
ଗୁଡୈଃ ସାର୍ଦ୍ଧଂ ବାବାମୃତଚରକ କୈରାତ ଜଗତାଂ । ୧୭ ।

**ଭାଷାର୍ଥ**—ଅନନ୍ତର ବାତପିତ୍ତ ଜ୍ୱରର ଚିକିତ୍ସା କହୁଅଛନ୍ତି । ହେ ସୁମୁଖି ! ବର (ହରଡ଼ା, ବାହାଡ଼ା, ଅଁଳା), ମୋଚ୍ (ଶିମୁଳୀଛେଲି), ରମ୍ଭା, ମଦ୍ଧପତ୍ରକୁ (ସୁନାରିଅଠା), ବାସା (ବାସଙ୍ଗଛେଲି) ଏମାନଙ୍କ ପାଚନକୁ ମହୁ ଓ ପିପ୍‌ପଳୀ ଚୂର୍ଣ୍ଣ ପ୍ରକ୍ଷେପ କରି ପିଇବାକୁ ଦେଲେ ବାତପିତ୍ତ ଜ୍ୱର ନାଶ ହୁଅଇ । ପୁନଶ୍ଚ ଅବ୍‌ଦ (ମୁଥା), କୈରାତ (ଚିରାଇତା), ଆମଳକ (ଅଁଳା) ହିମଜା (ଚନ୍ଦ୍ରଶୁଣ୍ଠୀ), ଯାସ (ଦୁରାଲଭା) ଏମାନଙ୍କ ପାଚନରେ ପୁରୁଣା ଗୁଡ଼ ଯୁକ୍ତ ଓଜନ ମିଶାଇ ପିଇବାକୁ ଦେବ । ଆଉ ମଧ୍ୟ ଅବ୍‌ଦ (ମୁଥା), ଅମୃତା (ଗୁଳୁଚୀ), ଚରକ (ଘରପୋଡ଼ିଆ), କୈରାତ (ଚିରାଇତା), ନୃଗରୁ (ଶୁଣ୍ଠୀ) ଏମାନଙ୍କର ପାଚନରେ ମହୁ ଓ ପିପଳୀ ଚୂର୍ଣ୍ଣ (ଏକମାସା) ପ୍ରକ୍ଷେପ କରି ପିଇବାକୁ ଦେଲେ ବାତ-ପିତ୍ତ ଜ୍ୱର ରୋଗୀ ଶୀଘ୍ର ଆରୋଗ୍ୟ ଲାଭ କରେ । ୧୭ ।

## ଅଥ ବାତ-କଫଜ୍ୱର-କଷାୟମାହ ।

ଜମ୍ଭେ ଜାନେ ! ଦୃଷ୍ଟିଂ ପବନକଫଜଂ ଗୁରୁଚକ୍ଷୁରେ !
ଦୁରାଲମ୍ଭା ଶୁଣ୍ଠୀ ଚରକଜଳବାହ୍ ଛିନ୍ନିଲତକା ।
ତଥା ଛିନ୍ନାତକ୍ତାଭୁବନଜଳବାହ୍ ଚନ୍ଦ୍ରଲପନେ !
କଷାଚବ୍ୟଗଚ୍ଛି ଜ୍ୱଳନ ଭୁବନଂ ବା ବଜନ୍ତୁପେ । ୧୮ ।

**ଭାଷାର୍ଥ**—ଅନନ୍ତର ବାତ କଫଜ୍ୱର ବିଷୟରେ ଯେ ସବୁ ପାଚନ କର୍ତ୍ତବ୍ୟ, ତାହା ଉଲ୍ଲେଖ କରୁଅଛନ୍ତି । ହେ କାନ୍ତେ ! ହେ ଗୁରୁ ଚକ୍ଷୁରେ ! ହେ ଚନ୍ଦ୍ରଲପନେ ! ବାତ କଫ ଜ୍ୱରରେ ଦୁରାଲଭା, ଶୁଣ୍ଠୀ, ଚରକ (ଘରପୋଡିଆ), ଜଳବାହ୍ (ମୁଥା), ଛିନ୍ନିଲତକା (ଗୁଳୁଚୀ) ଏମାନଙ୍କୁ ଆଣି କ୍ୱାଥକରି ପାନକଲେ ରୋଗୀ ସେହି ଜ୍ୱରରୁ ଅତିଶୀଘ୍ର ମୁକ୍ତ ହୁଏ । ଆଉ ମଧ୍ୟ ଛିନ୍ନା (ଗୁଳୁଚୀ), ତିକ୍ତା (ଚିରାଇତା), ଭୁବନ (ଶୁଣ୍ଠୀ), ଜଳବାହ୍

(ମୁଥା) ଏମାନଙ୍କର ପାଚନ ଏବଂ ଜଣା (ଚିତ୍ରକୀ), ଚବ୍ୟ (ଗୁଳିକାଠ), ଗ୍ରନ୍ଥି (ପିପ୍ପଳାମୂଳ), ଜ୍ୱଳନ (ଚିତାମୂଳ), ଭୂବନ (ଶୁଣ୍ଠୀ) ଏମାନଙ୍କର ପାଚନ ମଧୁ ପାନ କଲାମାତ୍ରକେ ଉକ୍ତ ବାତ କଫଜନିତ ଜ୍ୱର ଛାଡ଼ିଯାଏ । ୧୮ ।

## ଅଥ ପିତ୍ତଶ୍ଳେଷ୍ମ-ଜ୍ୱରହର-କଷାୟମାହ ।

ଅୟେ ୟମେ ! ଶ୍ୟାମେ ! ଶିଖରଦଶନେ ! ପୀବରକୁଚେ !
ସମୂଲ୍ଲାନାଂକାରେ ! ହରଯୁବତିଭ୍ରୂନ୍ମେ ! ସ୍ତବସ୍ତୁବେ !
ନଶ୍ୟେଚ୍ଛ୍ଳେଷ୍ମା ପିତ୍ତଂ ବୃଷବଃପିପଞ୍ଚାଙ୍ଗରଚିତଂ
ଶିତାକ୍ଷୌଦ୍ରୈଃ ସଦା ପଟୁଛଦନଧାନ୍ୟା ଶୃତମପି । ୧୯ ।

**ଭାଷାର୍ଥ**—ଏହାପରେ ପିତ୍ତଶ୍ଳେଷ୍ମା ଜ୍ୱରନାଶକ ପାଚନ ବିଷୟ କହୁଅଛୁ । ହେ ସ୍ତମେ ! ହେ ଶ୍ୟାମେ ! ହେ ଶିଖରଦଶନେ ! ହେ ପୃଥୁଳସ୍ତନେ ! ହେ ଅମ୍ଳାନଳଙ୍କାରମଣ୍ଡିତେ ! ହେ ଚାବଚ-ଭ୍ରୂନ୍ମେ ! ହେ ଶୋଭନାଙ୍ଗି ! ବୃଷବଃପୀ (ବାସଙ୍ଗଗଛ)ର ପଞ୍ଚାଙ୍ଗ ଅର୍ଥାତ୍ ମୂଳ, ଛେଲି, ପତ୍ର, ଫୁଲ ଓ ଫଳ ଏମାନଙ୍କୁ ଏକତ୍ର ସିଦ୍ଧ କରି ଖଣ୍ଡ ଓ ମଧୁସହିତ ସେବନ କଲେ ପିତ୍ତଶ୍ଳେଷ୍ମା ଜ୍ୱର ନଷ୍ଟ ହୁଏ । ପୁନଶ୍ଚ ପଟୁଛଦନ(ପଟୋଳପତ୍ର), ଓ ଧାନ୍ୟା (ଧନିଆ)ର ପାଚନ ଖଣ୍ଡ ମଧୁସହିତ ପାନକଲେ ମଧ୍ୟ ଉକ୍ତ ରୋଗ ଛାଡ଼ିଯାଏ ।

## ଅଥ ତ୍ରିଦୋଷ ଜ୍ୱରହର-କଷାୟମାହ ।

ତ୍ରିଦୋଷଂ ନିଃଶେଷଂ ଜୟତି ଦଶମଳୀ-ଭବଜଳଂ
ବନଂ ବଣ୍ଟା ଚକ୍ରା ଦଶଚରଣ ମୁସ୍ତାମୃତଭବଂ ।
ଜ୍ୱରେ ଜାଙ୍ଗ୍ରେ ଦୋଷତ୍ରିତୟରଚନେ ବାତ-କଫକେ
ବଶୁଦ୍ଧ୍ୟର୍ଥଂ ଶ୍ୟାମାଜନିତରଜସା ହଂସଗମନେ ! । ୨୦ ।

**ଭାଷାର୍ଥ**—ଅନନ୍ତର ତ୍ରିଦୋଷଜ୍ୱରହର କଷାୟ ବିଶେଷ କହୁଅଛୁ । ହେ ହଂସଗମନେ ! ଦଶମୂଳ ପାଚନ ଅର୍ଥାତ୍ ବେଲ ଛେଲ, ଗମ୍ଭାର, ପାଟେଳ, ଅଗବଥୁ, ଫଣଫଣା, ଶାଳପର୍ଣ୍ଣୀ, କୃଷ୍ଣପର୍ଣ୍ଣୀ, ଅଙ୍କରନ୍ତି, ଲଟାବେଙ୍କୋଳି, ଗୋଖୁରି ଏମାନଙ୍କ ସିଦ୍ଧଜଳ ପାନ କଲେ ତ୍ରିଦୋଷ (ବାତ, ପିତ୍ତ ଓ କଫ)ଜନିତ ଜ୍ୱର ନିଃଶେଷରୂପରେ ଅପଗତ ହୁଏ । ପୁନଶ୍ଚ ଚତୁର୍ଦ୍ଦଶାଙ୍ଗ ଅର୍ଥାତ୍ ବିଶ୍ୱା (ଶୁଣ୍ଠୀ), ତିକ୍ତା ( ଚିରେଇତା ), ଦଶଚରଣ (ଦଶମୂଳ=ବେଲ ଛେଲ ପ୍ରଭୃତି ୧୦ ), ମୁସ୍ତା (ମୁଥା), ଅମୃତ [ ଗୁଳୁଚୀ ] ଏମାନଙ୍କର ପାଚନରେ ମଧୁ, ପିପ୍ପଳୀ ଚୂର୍ଣ୍ଣ ସିକିଅଣା [ଏକତୋଳାର ଚତୁର୍ଥାଂଶ ] ମିଶ୍ରିତ କରିବାକୁ ହେବ । ୨୦ ।

## ତପ୍ତିନ୍ନେବାହ୍ର ।

ଅଦ୍ୟେ ! ତନ୍ଦ୍ରାକାଶାଶ୍ରବଣପରଳାପାରୁଚିତୃଷା-
ଭ୍ରମ ଶ୍ୱାସ ସ୍ୱେଦେ କୃପୁମରହମ୍ଭକ୍ ଶମୂଦମିଦଂ ।
ଧବପକ୍ଷାଧାନ୍ୟା ଦଶଚରଣ ତିକ୍ତା-ଯବଜଗତ-
ସୁରଦାନାଗାନାଂ ତ୍ରିତୟ୍ୱରଚତଂ ପଙ୍କଜଦୃଶେ ! । ୨୧ ।

**ଭାଷାର୍ଥ**—ଏହି ତ୍ରିଦୋଷଜ୍ୱର ବିଷୟରେ ଅନ୍ୟପ୍ରକାର ଔଷଧ ଯାହା ଅଛି,ତାହା ଏଠାରେ ପ୍ରକାଶ କରାଗଲା । ହେ ପଦ୍ମଲୋଚନେ ! ତନ୍ଦ୍ରା, କାଶ, ବଧିରତା, ପ୍ରଳାପ, ଅରୁଚି, ତୃଷା, ଭ୍ରମ, ଶ୍ୱାସ, ସ୍ୱେଦ ପ୍ରଭୃତି ବିକାର ଉପସ୍ଥିତ ହେଲେ ନିମ୍ନୋକ୍ତ ଅଷ୍ଟାଦଶାଙ୍ଗ ପାଚନ ଯଥା,—ଧବପକ୍ଷ [ ଭୂନିମ୍ବ ଅର୍ଥାତ୍ ଚିରେଇତା ], ଧାନ୍ୟା [ ଧନିଆ ], ଦଶଚରଣ [ ଦଶମୂଳ ], ତିକ୍ତ [କଟୁକି], ଯବ [ଇନ୍ଦ୍ରଯବ ], ଜଗତ୍ ( ଶୁଣ୍ଠୀ ), ସୁର ( ଦେବଦାରୁ ), ଅବ ( ମୁଥା ) ନାଗ,(ଗଜପିପ୍ପଳୀ ) ଏହା ବ୍ୟବହାର କରିବ । ୨୧ ।

## ତତ୍ରୈବ ସ୍ୱେଦୋଦ୍ଗମ-ପ୍ରତିକାରମାହ ।

ନଦାଘେ ସଂଜାତେ ମଗଧତନୁଜାକ୍ଷୋଦ ଉଚିତଃ
ପ୍ରଘର୍ଷେ କୌଳତ୍ଥଃ କମଳଲପନେ ! କାନ୍ତବଚନେ !
ଘମ୍ମାମ୍ଭ ସଂଜାତଂ ଶିଖରଦଶନେ ! ବା ବିତୃଷତେ
ଭଜସ୍ତର୍ଷେ ଶସ୍ତଂ ଘନସାରଚୂର୍ଣ୍ଣଂ ବିଶଯ୍ୟନେ । ୧୨ ।
ଅକୃତପୁଣ୍ୟୀଜଂଘାଚରଣମ୍ନେଚତଂ ମୂର୍ଦ୍ଧଧରଣେଃ-
ବଲେହୋଽଷ୍ଟାଙ୍ଗାନାଂ ଉଦସକରତୋଽସ୍ମାତଲଗତେ ।
ସମୁଦ୍ରାନ୍ତାପୃଥ୍ୱୀ-ଜିତକଟୁକକୁଳୀରନବପତ-
ପ୍ରସୂତାପଣ୍ଟୀଳୀ-ମଗଧଚରଣାନାଂ ସମୃଚ୍ଚଃ । ୧୩ ।

**ଭାଷାର୍ଥ**—ସନ୍ନିପାତ ଜ୍ୱରରେ ସ୍ୱେଦୋଦ୍ଗମ ହେଲେ ତହିଁର ପ୍ରତିକାର କହୁଅଛନ୍ତି । ହେ କମଳଲପନେ ! ହେ କମନୀୟ-ବଚନେ ! ହେ ଶିଖରଦଶନେ ! ସନ୍ନିପାତ ଜ୍ୱରରେ ସ୍ୱେଦ ଜାତ ହେଲେ ( ବିଶେଷରୂପେ ଝାଳ ବୋହିଲେ ) ପିପ୍ପଳୀ-ଚୂର୍ଣ୍ଣ କୋଳତ୍ଥ ଚୂର୍ଣ୍ଣ କିମ୍ବା ଘୁଆଣୀ ଚୂର୍ଣ୍ଣ ଦେହରେ ଘଷିବା ଉଚିତ । ତୃଷା ହେଲେ କର୍ପୂର ଚୂର୍ଣ୍ଣ ଖାଇବାକୁ ଦେବ । ନିଦ୍ରା ନ ହେଲେ କାଇଞ୍ଚ ଚେର ମଥାରେ ବାନ୍ଧିବ । ସନ୍ଧ୍ୟା-ବେଳେ ସମୁଦ୍ରାନ୍ତ, (ଦୁରାଲଭା), ପୃଥ୍ୱୀ ( କଳାଜିରା ), ଶୁଣ୍ଠି, ପିପ୍ପଳ, ମରିଚ, କୁଳୀର (କଙ୍କଡାଶୃଙ୍ଗୀ), ନବପତପ୍ରସୂତା ପ୍ରଣାଳୀ ( କଟଫଳ ), ମଗଧଚରଣ ( ପିପ୍ପଳୀମୂଳ ) ଏହି ଆଠୋଟି ଦ୍ରବ୍ୟର ଚୂର୍ଣ୍ଣ ଗୁରଅଣା ( ଘୁକ ) ଓଜନ ପରିମାଣରେ ମଧୁ-ସହିତ ସେବନ କରିବ । ଏହାକୁ ଅଷ୍ଟାଙ୍ଗାବଲେହ କହନ୍ତି । । ୧୨ । ୧୩ ।

## ଅଥ କର୍ଣ୍ଣମୂଳ ଶୋଥ-ପ୍ରତିକାରମାହ ।

ଜ୍ୱରେ ଶାନ୍ତେ ଦୋଷଜିତଜ୍ୱରତେ ପଙ୍କଜଦୃଶେ !
ଭବେତ୍ ଛ୍ରୂତ୍ୟୋଃ ଶୋଥୋ ହରତ ମନୁଜାସ୍ୟାସନଚସ୍ୟଂ ।

ନରେଭସ୍ତାପ୍ରୂବଂ ରୁଧିରବଧନା ବାଭକସଂହୂତ
ଚିଞ୍ଚା ଶ୍ୱା ଲେପଃ କମଳଲପନେ ! ପେଷିତତରଃ । ୨୪ ।
ବଗ୍ଧ ଭଣ୍ଠା ବ୍ୟାଧିଶ୍ୱୃଥିପ୍ଲବଗୈରୈଃ ସୁବଚନେ !
ପଧୋବଂଲ୍ଲୈଃ ସହା ଜସ୍ୱତ ସହସା କୋଷ୍ଣତତରଃ ।
ନ ଭେଦଃ କାକସ୍ୟ ତିମଳଭବଜୂର୍ଣ୍ଣେ ର୍ଜ୍ୱ ତଥା
ଭୃଷକ୍ କ୍ଷାତୁଂ ଲଙ୍ଗଂ ଯଦ ଭବତ ସର୍ବଜ୍ଞ ଇତରେ । ୨୫ ।

**ଭାଷାର୍ଥ**—ଅତନ୍ତର କର୍ଣ୍ଣମୂଳଶୋଥ ଚକିତ୍ସା ବଷସ୍ତୁ କହୁଅଛୁ । ହେ ଟଙ୍କଜନସ୍ତନେ ! ତ୍ରିଦୋଷଜନତ ଜ୍ୱର ଅର୍ଥାତ୍ ସାନ୍ନିପାତକ ଜ୍ୱରର ଆଦ୍ୟ, ମଧ୍ୟ କମ୍ବା ପ୍ରାନ୍ତ କାଳରେ ଯଦ କର୍ଣ୍ଣମୂଳଶୋଥ ଜାତ ହୁଏ, ତାହାହେଲେ ପ୍ରଥମରେ ରକ୍ତମୋକ୍ଷଣ କରାଇବ । ତଦନନ୍ତର ତାଡ଼ କଫହାରକ ପ୍ରକ୍ରିୟା କରବା ପ୍ରଶସ୍ତ ତତ୍ପରେ ବଚ, ଶୁଣ୍ଠୀ, ବ୍ୟାଧି ( କୁଡ଼ ), ଶ୍ୱସ୍ୱଥ୍ ହ୍ୱର (ପୁରୁଣୀ), ଗୈର ( ଗେରୁମାଟି ) ବୃଧୂଚଲ୍ଲ ( କଟ୍ଫଳ ) ଏମାନଙ୍କୁ ଆଣି ପାଣିରେ ବାଟି ଅଳ୍ପ ଉଷ୍ଣ କର କାନମୂଳରେ ଲେପ ଦେବ । ତ୍ରିଦୋଷ ବା ସନ୍ନପାତ ଜ୍ୱର ଏବଂ ମୃତ୍ୟୁ ଏ ଉଭୟ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଯେହେତୁ, ବୈଦ୍ୟ ଅନ୍ୟ ରୋଗମାନଙ୍କରେ ସର୍ବଜ୍ଞ ହେଲେ ସୁଦ୍ଧା ଏହ ତ୍ରିଦୋଷ ଜ୍ୱର ବଷୟରେ କଛୁ ମାତ୍ର ଜାଣି ପାରେ ନାହିଁ । ୨୪ । ୨୫ ।

## ଯଦ୍‌ବୈଦ୍ୟାନାଂ ତ୍ରିଦୋଷମୋଚନମେବ ପୂର୍ବାଧିକ ମିତ୍ୟାହ ।

ତଦେବ ଟର୍ଥୋଽଜମେବ ଗୃହ୍ନ-ସ୍ତଦେବ ଦୂର୍ବାଧିକମାହୁ ର୍ଯାୟ୍ୟାଃ ।
ତ୍ରିଦୋଷରୋଗାପୃହମୋଚନଂ ଯତ୍, ଦଦାତ କୋ ବା କମପୀହ ବୈଦ୍ୟଃ ॥
ତ୍ରିଦୋଷରୋଗାଦୃହମୋଚନଂ ଯତ୍, କରୋତ ବୈଦ୍ୟୋ ଭଣ ପଙ୍କଜାକ୍ଷି !
କୋ ଦେଯମସ୍ମାମସ୍ୟହାରଣେ କଂ? ପ୍ରାଣା ଅପି ପ୍ରାଣପତେ ର୍ଧନୈଃ କ? ।୨୬।

**ଭାଷାର୍ଥ**—ସଦ୍‌ବୈଦ୍ୟମାନଙ୍କର ତ୍ରିଦୋଷମୋଚନ କର୍ମକୁ ପୂର୍ତ୍ତ ଧର୍ମ ସଙ୍ଗେ ସମାନ ବୋଲି କୁହାଯାଇଅଛି । ସନ୍ନିପାତ ରୋଗରୁ ସଦ୍‌ବୈଦ୍ୟମାନେ ଯାହା କି ଉଦ୍ଧାର କରନ୍ତି, ତାହାକୁ ପଣ୍ଡିତମାନେ, ତୀର୍ଥାଟନ, ପୂର୍ତ୍ତିକ ଅର୍ଥାତ୍ ଦେବାଳୟ ନିର୍ମାଣ, ପୁଷ୍କରିଣୀ ଖନନ ପ୍ରଭୃତି ଜନସାଧାରଣ-ହିତକର ଓ ଧର୍ମଯଶଃକୀର୍ତ୍ତିକର କର୍ମ ସଙ୍ଗେ ସମାନ କର୍ମ ବୋଲି କହି-ଅଛନ୍ତି । ଅତଏବ ଉତ୍ତମ ଚିକିତ୍ସକ ତ୍ରିଦୋଷରୁ ମୁକ୍ତ କରି ରୋଗିକୁ କଣ ବା ନ ହୁଏ ? ହେ ପଙ୍କଜାକ୍ଷି ! କହି ଦେଖି, ଯେଉଁ ବୈଦ୍ୟ ତ୍ରିଦୋଷରୁ ରୋଗିକୁ ମୁକ୍ତ କରେ, ସେହି ରୋଗାପହାରୀ ବୈଦ୍ୟଙ୍କୁ କଣ ବା ଅଦେୟ ? ସେ ତ ପ୍ରାଣଦାତା; ସୁତରାଂ ପ୍ରାଣଠାରୁ ଅଧିକ କିଛି ନାହିଁ । ଅତଏବ ସେହି ବୈଦ୍ୟରାଜଙ୍କୁ ଧନ କଣ, ସମସ୍ତ ଦିଆଯାଇ-ପାରେ । ୧୭ ।

## ସର୍ଗ-ପ୍ରଶଂସନମ୍ ।

କାବ୍ୟେ କୌତୁକ-ସାଗରେ ବିରଚିତେ ନାରାୟଣେନାଗମତ୍
ସର୍ଗୋଽୟଂ ବିବିଧୈଃ କୁତୂହଳପଦୈଃ ସଂକ୍ଷିପ୍ତଯୋଗୋକ୍ତିଭିଃ ।
ଆଦ୍ୟୋ ବୈଦ୍ୟଜନା ବିଧାର୍ଯ୍ୟ ସହସା ମୋଦଂ ଶୁଭଂ ବାଚ୍ୟତାଂ
ଶ୍ଲାଘ୍ୟାର୍ଥପ୍ରବରଂ ଚିକିତ୍ସକବରାଦ୍ରୋଗଃ ସଦା ପୂଜ୍ୟତାଂ । ୧୮ ।

**ଭାଷାର୍ଥ**—ସର୍ଗ ପ୍ରଶଂସା କରି କହୁଅଛି । ନାରାୟଣ କବିଙ୍କ ଦ୍ୱାରା ବିରଚିତ ଏହି କୌତୁକ-ସାଗର କାବ୍ୟର ପ୍ରଥମ ସର୍ଗ ସମାପ୍ତ ହେଲା । ଏହି ସର୍ଗର ଶ୍ଲୋକମାନଙ୍କରେ ନାନାବିଧ କୌତୂ-ହଳପ୍ରଦ ସଂକ୍ଷିପ୍ତ ପ୍ରୟୋଗଯୁକ୍ତ ପଦମାନଙ୍କର ବିନ୍ୟାସ ଲକ୍ଷିତ ହେଉଅଛି । ବୈଦ୍ୟମାନେ ଏହି ବୈଦ୍ୟପ୍ରବରଙ୍କ ହେତୁରୁ ଆନନ୍ଦ ଅନୁଭବ କରି ଜଗତର ଏବଂ ଏହି ବୈଦ୍ୟରାଜଙ୍କର ଶୁଭ କାମନା କରନ୍ତୁ ।

ପ୍ରଥମ ସର୍ଗ ସମାପ୍ତ ।

---

## ଦ୍ୱିତୀୟଃ ସର୍ଗଃ ।

## ଅତ୍ର ସର୍ଗେ ଜୀର୍ଣ୍ଣଜ୍ୱର-ପ୍ରତୀକାରମାହ ।

ଜୀର୍ଣ୍ଣଜ୍ୱର ପ୍ରତୀକାରଂ ହେ ହେମ-କଲଶସ୍ତନ !
ମତ୍ତଃ ଶୃଣୁ ପ୍ରିୟତମେ ! କାନ୍ତେ ! କାନ୍ତବଚେ ଭଣ । ୧ ।

**ଭାଷାର୍ଥ**—ଏହି ସର୍ଗରେ ଜୀର୍ଣ୍ଣଜ୍ୱରର ଯାହା ପ୍ରତୀକାର, ତାହା କହୁଅଛୁ । ହେ ସ୍ୱର୍ଣ୍ଣକଲଶସ୍ତନ ! ହେ ପ୍ରିୟତମେ ! ଆମ୍ଭଠାରୁ ଜୀର୍ଣ୍ଣଜ୍ୱର ସମ୍ବନ୍ଧରେ ଚିକିତ୍ସାବିଷୟ ଶ୍ରବଣ କର, ଏବଂ ହେ କାନ୍ତେ ! ତୁମ୍ଭେ ତୁଚ୍ଛକର ବଚନ ପ୍ରକାଶ କର । ୧ ।

ଅସ୍ୟେ କାନ୍ତେ ! ଜୀର୍ଣ୍ଣେ ଭୁବନବୃହତୀ ଛିନ୍ନ ଲତିକା—
ଜଳଂ ପେୟଂ ଶୌଣ୍ଡୀ କୁସୁମରସଯୁକ୍ତଂ ମୃଗଦୃଶେ !
ତଥା ଛିନ୍ନାତୋୟଂ ସୁରଭିଦଳପାଥଃ କୁରୁ-ଗୁରୁ—
ପ୍ରସୂନୋତ୍ଥଂ ତୋୟଂ ସୁମୁଖି ! ସଗୁଡଂ ମାଗଧିରଜଃ । ୨ ।

**ଭାଷାର୍ଥ**—ବର୍ତ୍ତମାନ ପିତ୍ତଜ୍ୱରରେ ତାହ ଚିକିତ୍ସା କହୁଅଛୁ । ହେ ସୁମୁଖି ! ହେ ମୃଗଦୃଶେ ! ହେ କାନ୍ତେ ! ଜୀର୍ଣ୍ଣଜ୍ୱରରେ ଭୁବନ (ଶୁଣ୍ଠୀ), ବୃହତୀ (ଡେଙ୍ଗାଭେଜ, ଲଟାଭେଙ୍କୋଳି), ଛିନ୍ନଲତିକା (ଗୁଳୁଚୀ) ଏମାନଙ୍କର କ୍ୱାଥରେ ମହୁ, ପିପ୍ପଳୀ ଚୂର୍ଣ୍ଣ ପ୍ରକ୍ଷେପ କରି ପିଇବାକୁ ଦେବ । ପୁନଶ୍ଚ ଛିନ୍ନା (ଗୁଳୁଚୀ)ର କ୍ୱାଥରେ ମହୁ ଓ ପିପଳୀ ଚୂର୍ଣ୍ଣ ପ୍ରକ୍ଷେପ କରି ଏବଂ ସୁରଭିଦଳ ପାଥ (କୃଷ୍ଣତୁଳସୀ ପତ୍ରର କ୍ୱାଥ) ମହୁ ପିପ୍ପଳୀ ଚୂର୍ଣ୍ଣରେ, ବା କୁରୁଗୁରୁପ୍ରସୂନ (ଗନ୍ଧଶଫୁଲ)ର ରସ ଦ୍ୱାରା ମହୁ ପିପ୍ପଳୀ ଚୂର୍ଣ୍ଣ ପରୀକ୍ଷା କରି ପିଇବାକୁ ଦେଲେ ଜୀର୍ଣ୍ଣ ଜ୍ୱର ଦୂର ହୁଏ । ମାଗଧିରଜଃ (କେବଳ ପିପ୍ପଳୀ ଚୂର୍ଣ୍ଣ) ଅର୍ଦ୍ଧତୋଳା ପୁରୁଣା ଗୁଡ଼ ସହିତ ମିଶାଇ ଅବଲେହ କରାଇବ । ଏଥିରେ ଜୀର୍ଣ୍ଣଜ୍ୱରର ଉପଶମ ହୁଏ । ୨ ।

## ନବଜ୍ୱର-କଷାୟମାହ ।

ପଞ୍ଚମୂଲଂ କଣାନାଥଂ ଜ୍ୱରଂ ଜୀର୍ଣ୍ଣଂ ବିନାଶୟେତ୍ ।
କ୍ଷପାକାନ୍ତଂ କ୍ଷପାନାଥମୁଖି ! ଭୂବନଜଂ ନବଂ । ୩ ।

**ଭାଷାର୍ଥ**—ସନ୍ନିପାତ ତ୍ରିଦୋଷ ଜନିତ ଜ୍ୱରର ପାଚନ ବିଷୟ କହୁଅଛନ୍ତି । ହେ ଚନ୍ଦ୍ରମୁଖି ! ପଞ୍ଚମୂଳ ଅର୍ଥାତ୍ ବୃହତ୍ ପଞ୍ଚମୂଳ (ବେଲ, ଗମ୍ଭାରି, ପାଟଳୀ, ଅଗବଥୁ, ଫଣଫଣା, ) ଏମାନଙ୍କର ପାଚନରେ ପିପ୍ପଳୀ ଚୂର୍ଣ୍ଣ ପ୍ରକ୍ଷେପ କରି ପିଇବାକୁ ଦେଲେ ସନ୍ନିଜ୍ୱର ବିନାଶ ହୁଅଇ । ପୁନଶ୍ଚ ଭୂବନଜ ଅର୍ଥାତ୍ ଚତୁର୍ଦ୍ଦଶାଙ୍ଗ (ଦଶମୂଳ, ଶୁଣ୍ଠୀ, ଚିରାଇତା, ମୁଥା, ଗୁଳୁଚି) ଏହି ଚଉଦଟିର ପାଚନକୁ ପିପ୍ପଳୀ ଚୂର୍ଣ୍ଣ ସହିତ ସେବନ କଲେ ସନ୍ନିପାତ ତ୍ରିଦୋଷଜନିତ ଜ୍ୱର ଅପଗତ ହୁଏ । ୩ ।

## ଜୀର୍ଣ୍ଣଜ୍ୱରାବସ୍ଥାୟାଂ ଗବ୍ୟଦୁଗ୍ଧସ୍ୟ ପେୟତ୍ୱମାହ ।

ଗବ୍ୟଂ ପୟଃ କ୍ଷୀଣବଳାସଶୁଦ୍ଧେ ଜୀର୍ଣ୍ଣେଽଗଦଙ୍କାର ଇତି ସ୍ମ ବକ୍ତି ।
ଧାରୋଷ୍ଣମେତତ୍ତରୁଣେଽପ୍ୟପଥ୍ୟଂ କାନ୍ତେ ! ଜ୍ୱରେ କିଂ ବହୁଭାଷିତେନ ॥

**ଭାଷାର୍ଥ**—ଜୀର୍ଣ୍ଣଜ୍ୱରାବସ୍ଥାରେ ଗବ୍ୟ ଦୁଗ୍ଧ ବିଷୟ ଉଲ୍ଲେଖ କରୁଅଛନ୍ତି । ହେ କାନ୍ତେ ! କଫ ଓ ଶୁଦ୍ଧ-ହୀନ ଜୀର୍ଣ୍ଣଜ୍ୱରରେ ଧାରୋଷ୍ଣ ଗାଈଦୁଧ ପାନ କରିବା ଧନ୍ୱନ୍ତରିଙ୍କ ମତ । କିନ୍ତୁ ତରୁଣ ଜ୍ୱରରେ ଉକ୍ତ ଧାରୋଷ୍ଣ ଦୁଗ୍ଧ ଅପଥ୍ୟ; ଏ ବିଷୟରେ ବିଶେଷ କହିବା ନିଷ୍ପ୍ରୟୋଜନ । ୪ ।

## ଏକାହିକ ଜ୍ୱର-କଷାୟମାହ ।

ତ୍ରିଫଳଶକମହୀରୁହଗୋସ୍ତନୀ-ତିକ୍ତନିମ୍ବବୃଷୈର୍ମଧୁସଂଯୁତଃ ।
କୁବଳୟାକ୍ଷି ! କଥୈକଦିନୋଦ୍ଭବଂ ହରତି ଘର୍ମଇବ କ୍ଷଣଦାଂ ପ୍ରିୟେ ! ।୫।

**ଭାଷାର୍ଥ**—ଏକାହ୍ନିକ ଜ୍ୱର ( ପାଳିଜ୍ୱର ) ସମ୍ବନ୍ଧରେ ପାଚନ ବିଷୟ କହୁଅଛନ୍ତି । ହେ ମନୋହରକଳସସ୍ତନେ ! ତ୍ରିଫଳ ( ହରିଡ଼ା, ବାହାଡ଼ା, ଅଁଳା ), ରଜନୀଦ୍ୱୟ ( ସୁନାରଅଠା ), ଗୋସ୍ତନୀ ( ଦ୍ରାକ୍ଷା ), ତଗର ( ଘରପୋଡ଼ିଆ ), ନିମ୍ବଛେଲି, ବୃଷ ( ବାସଙ୍ଗଛେଲି ) ଏମାନଙ୍କ ପାଚନକୁ ମନ୍ତ୍ରପ୍ରତିଷ୍ଠିତ କରି ସେବନ କଲେ ଏକାହ୍ନିକ ( ପାଳି ଅର୍ଥାତ୍ ଏକଦିନ ଛଡ଼ା ) ଜ୍ୱର କମିଯାଏ । ହେ ପ୍ରିୟେ ! ଯେପରି ବ ନଦୀର କାଳ ଉପସ୍ଥିତ ହୋଇ ଶକ୍ତିକୁ କ୍ଷୀଣ କରେ ।

## ତୃତୀୟକ-ଜ୍ୱର-ପ୍ରତିକାରମାହ ।

ଅବ୍ଦବିଶ୍ୱ ମଲୟାଜମ୍ବୁଧାନ୍ୟା କାନ୍ଦିକଂ ତିଦ୍ଦନଜାତକମସ୍ଥ !
ନାଭିକେଳିକୁଣ୍ଡଳେ ! ତନୂଦରି ! ପ୍ରାୟଶୋ ହରତି ମାଷ୍ଟିକଜ୍ୱରଂ । ୨ ।

**ଭାଷାର୍ଥ**—ତୃତୀୟକ ଜ୍ୱର ( ତୃତୀୟ ଦିନରେ ଯେ ଜ୍ୱର ଜାତ ହୁଏ ) ସେ ସମ୍ବନ୍ଧରେ ଚିକିତ୍ସା କହୁଅଛନ୍ତି । ହେ କାମକେଳିକୁଣ୍ଡଳେ ! ହେ କୃଶୋଦରି ! ଅବ୍ଦ ( ମୁଥା ), ବିଶ୍ୱ ( ଶୁଣ୍ଠୀ ), ମଳୟ ( ରକ୍ତଚନ୍ଦନ ), ଅମ୍ବୁ ( ବେଣାଚେର ), ଧାନ୍ୟ ( ଧନିଆ ) କଟ୍ୱିକା ( କୁଟକୀ ) ଏମାନଙ୍କର ପାଚନରେ ମନ୍ତ୍ର ପ୍ରକ୍ଷେପ-କରି ପାନ କଲେ ତୃତୀୟକ ଜ୍ୱର ( ତିନିଦିନଜାତ ଜ୍ୱର ) ପ୍ରାୟଶଃ ଅପହୃତ ହୁଏ । ୨ ।

## ଚାତୁର୍ଥକ-ଜ୍ୱର-କଷାୟମାହ ।

ମହୌଷଧାମଳକାଦିପିଷ୍ଟଦ୍ରା-ଦ୍ରବକଂ ମଧୁନା ବଦନେକ୍ଷଣେ !
ବକମିବଂ ବନଜଂ ଶିଶିରେ ଯଥା କୁତଦନୋଦ୍ଭବମସ୍ଥ ! ସୁସମ୍ଭବେ ! ।୨।

**ଭାଷାର୍ଥ**—ଚାତୁର୍ଥିକ ଜ୍ୱର ( ଚତୁର୍ଥ ଦିନରେ ଯେ ଜ୍ୱର ଜାତ ହୁଏ ) ତନ୍ନିମନ୍ତେ ପାଚନ ବିଷୟ କହୁଅଛନ୍ତି । ହେ

ହେ ବନଜେକ୍ଷଣେ ( ହେ ପଦ୍ମଲୋଚନେ ! ) ହେ ସୁଦନ୍ତବେ [ହେ ସୁଲକ୍ଷଣେ !] ମଳୟଜ (ରକ୍ତଚନ୍ଦନ),ଆମଳକ (ଅଁଳା), ଅନିମିଷ ( ଦେବଦାରୁ ), ଧ୍ରୁବା (ଶାଳପର୍ଣ୍ଣୀ), ଭୂବନ (ଶୁଣ୍ଠୀ) ଏମାନଙ୍କ ପାଚନ ମଧୁସହିତ ସେବନ କଲେ ଶିଶିର, ବନଜ ( ପଦ୍ମ ) ବିନାଶ କଲା ପରି ଶ୍ରୁତିଦନୋଦ୍ଭବ ( ଚତୁର୍ଥ-ଦିନ-ସମ୍ଭବ ଅର୍ଥାତ୍ ଚାତୁର୍ଥିକ ) ଜ୍ୱରକୁ ବିନଷ୍ଟ କରଇ । ୭ ।

## ବିଷମ ଜ୍ୱରହର-କଷାୟମାହ ।

ହରେଦ୍ ବସ୍ତ୍ର ଗୁଡେନୈବ ଗୁଡେନୈବଜାଜିକାଳିକା ।
ଶିବା ତଥା ମଧୁପ୍ଲୁତା ଘଟସ୍ତନ ! କୃଶୋଦରି ! । ୮ ।

**ଭାଷାର୍ଥ**—ବିଷମଜ୍ୱରନାଶକ ପାଚନ ବିଷୟ କହୁଅଛି । ହେ ଘଟସ୍ତନ ! ହେ କୃଶୋଦରି ! ପୁରୁଣା ଗୁଡ଼ ସହିତ ବଚ ଚୂର୍ଣ୍ଣ ଏବଂ ପୁରୁଣା ଗୁଡ଼ ସହିତ କାଳିକାଜାଜୀ ( କଳାଜୀରାଚୂର୍ଣ୍ଣ ); ମଧୁ ସହିତ ଶିବା (ହରିଡ଼ା ଚୂର୍ଣ୍ଣ) ସେବିତ ହେଲେ ଏମାନେ ପ୍ରତ୍ୟେକ ବିଷମଜ୍ୱରନାଶକ ହୁଅନ୍ତି । ୮ ।

## ପୁନରପ୍ୟାହ ।

ମୁସ୍ତା ପଥ୍ୟା ଛିନ୍ନାତୋୟଂ କ୍ଷୌଦ୍ରୈଃ ସଦା ବିଷମଂ ହନ୍ୟାତ୍ ।
ଭ୍ରୂଭଙ୍ଗୀ ତେ ଯତିନାଂ ଚିତ୍ତଂ ଯଦ୍ୱତ୍କାନ୍ତେ ! ହର୍ତ୍ତୁଂ ଦକ୍ଷା । ୯ ।

**ଭାଷାର୍ଥ**—ପୁନର୍ବପି କହୁଅଛି । ମୁସ୍ତା ( ମୁଥା ), ପଥ୍ୟା ( ହରିଡ଼ା ), ଛିନ୍ନା ( ଗୁଳୁଚୀ ) ଏମାନଙ୍କ ପାଚନ ମଧୁ ସହିତ ପାନ କଲେ ବିଷମ ଜ୍ୱରକୁ ହରଣ କରେ । ହେ କାନ୍ତେ ! ତୁମ୍ଭର ଭ୍ରୂଭଙ୍ଗୀ ଯୋଗିଜନମାନଙ୍କର ଚିତ୍ତ ହରଣ କରିବା ପାଇଁ ଯେପରି ସମର୍ଥ, ଏହି ପାଚନ ବିଷମଜ୍ୱର ବିନାଶରେ ସେହିପରି ଦକ୍ଷ ବୋଲି ଜାଣିବ । ୯ ।

## ପୁନରପ୍ୟାହ ।

ଅୟେ କାନ୍ତେ ! ଶ୍ୟାମେ ! କୂଳକ କଟୂଯଷ୍ଟୀ ଦ୍ରୁମବତୀ—
ଘନୈ ସ୍ତୋୟଂ କ୍ଷୌଦ୍ରୈ ଜନ୍ୟତ ଲପନଂ ତେ ବଧୂମିବ ।
ଶିବା ବିଶ୍ୱ ମୁସ୍ତାମୃତଦ୍ୱୟଗଳତୋୟଂ ମଧୁକଣା—
ବିମିଶ୍ରଂ ତେ ତନ୍ୱେ ! କମଳମିବ ନେତ୍ରଂ ବିକସୟତେ ।୧୦।

**ଭାଷାର୍ଥ**—ପୁନଶ୍ଚ କହୁଅଛି । ହେ କାନ୍ତେ ! ହେ ଶ୍ୟାମେ ! ହେ ରମଣୀୟେ ! କୂଳକ (ପଟୋଳପତ୍ର), କଟୂ ( କଟୁକ ) ଯଷ୍ଟୀ (ଯଷ୍ଟିମଧୁ) ଦ୍ରୁମବତୀ (ହରଡ଼ା), ଘନ (ମୁଥା) ଏମାନଙ୍କ ପାଚନ ମଧୁଯୁକ୍ତ ହୋଇ ପୀତ ହେଲେ ବିଷମଜ୍ୱରବିନାଶୀ ହୁଏ; ଯେପରି ତୁମ୍ଭର ମୁଖ ଚନ୍ଦ୍ରଙ୍କୁ ଜୟ କରୁଅଛି । ଆଉ-ମଧ—ଶିବା (ହରଡ଼ା) ବିଶ୍ୱ (ଡେଙ୍ଗାଭେଜ), ମୁସ୍ତା (ମୁଥା), ଅମୃତଦ୍ୱୟଗଳ ( ଗୁଳୁଚି, ଅଁଳା ) ଏମାନଙ୍କର ପାଚନ ମଧୁ ଓ ପିପ୍ପଳୀ ଚୂର୍ଣ୍ଣ ସଂଯୁତ ସେବିତ ହେଲେ, ତୁମ୍ଭର ନେତ୍ର, ପଦ୍ମକୁ ଯେପରି ଜୟ କରୁଅଛି, ଏହା ମଧ୍ୟ ବିଷମଜ୍ୱରକୁ ସେହିପରି ପରାସ୍ତ କରେ । ୧୦ ।

## ପୁନରପ୍ୟାହ ।

ରସୋନାନାଂ କଲ୍କୋ ଜନ୍ୟତ ତିଳତୈଳେନ ସହିତଃ
ଯଥାଶ୍ଳେଷସ୍ତାପଂ ସୁମୁଖି ! ଭୁଜବଲ୍ଲୀଦ୍ୱୟକୃତଃ ।
ମନୋଭୂ-ସଞ୍ଜାତଂ ମଧୁରବଚନଂ ତେ ମଧୁମନ୍ଦଂ
ମନାକ୍ ଶ୍ୟାମେ ! ଦାସେ ବିତର ବଦନାମ୍ଭୋରୁହସୁଧାଂ । ୧୧ ।

**ଭାଷାର୍ଥ**—ପୁଣି ମଧ୍ୟ କହୁଅଛି । ହେ ଶ୍ୟାମେ ! ହେ ସୁମୁଖି ! ଯେପରି ତୁମ୍ଭ ବାହୁଲତାଦ୍ୱୟର ଆଲିଙ୍ଗନ କନ୍ଦର୍ପଜନିତ ତାପକୁ ଜୟକରେ, ସେହିପରି ବଟା ରସୁଣକୁ ଅର୍ଦ୍ଧତୋଳା ପରିମିତ

ଗୁଆଡିଅ ଓ ତେଳଚେଲ ସହିତ ମିଶ୍ରିତ ଘିଅ ସେବନ କଲେ ବିଷମ ଜ୍ୱର ବିନଷ୍ଟ ହୁଏ । ହେ ମନୋହାରିଣି ! ତୁମ୍ଭ ମୁଖ-ଚନ୍ଦ୍ରର ଅମୃତ ସ୍ୱରୂପମଧୁର ବଚନକୁ ଏ ଦାସ ପ୍ରତି ବିତରଣ କର । ୧୧ ।

## ଜୀର୍ଣ୍ଣ ଜ୍ୱରେ ଧୂପମାହ ।

ହେ ହେ କାନ୍ତେ ! ପ୍ରିୟତମ ! ତଥା ବ୍ରୂହି କଂ ହେ କୃଶାଙ୍ଗି !
ମିତ୍ରଂ ମେ ସ୍ୟାତ୍ କମଲନୟନେ ! ଜୀର୍ଣ୍ଣଜ୍ୱରାର୍ତ୍ତ୍ୟାରୁବସ୍ଥା ।
ତତ୍କିଂ କାର୍ଯ୍ୟଂ ବଦ ଗଦ ଶିବାନମ୍ବଲକ୍ଷାଯବୋଗ୍ରା—
ସର୍ପିର୍ଧୂପିତଂ ଭବେତ୍ତ୍ୱ ସୁଖଦେ ! ଫାଲ୍ଗୁନଂ ମାନବତ୍ତ୍ୱେ ! । ୧୨ ।

**ଭାଷାର୍ଥ**— ଜୀର୍ଣ୍ଣ ଜ୍ୱରରେ ଧୂପ ବିଷୟ କହୁଅଛୁ । ହେ କାନ୍ତେ ! ଏହା ବୋଲି ପ୍ରିୟାକୁ ସମ୍ବୋଧନ କରିବାରୁ ପ୍ରିୟା ସ୍ୱାମିଙ୍କୁ ହେ' ପ୍ରିୟତମ ' ! ବୋଲି ସମ୍ବୋଧନ କରି କହିଲେ କି, ହେ ପ୍ରିୟତମ ! କଣ ବୋଲିବା ହେଉ ? ଉତ୍ତରେ ସ୍ୱାମୀ କହିଲେ, ହେ କୃଶାଙ୍ଗି, ହେ ମାନଧନେ ! ମୁଁ କଣ କହୁଛି କି, ମୋର ଜଣେ ଜୀର୍ଣ୍ଣଜ୍ୱରାକ୍ରାନ୍ତ ମିତ୍ର ଅଛନ୍ତି । ଏହା ଶୁଣି ପ୍ରିୟ-ତମା କହିଲେ, କଣ କର୍ତ୍ତବ୍ୟ ? ତାହା କହନ୍ତୁ । ପ୍ରିୟତମ କହିଲେ, ଗଦ [କୁଡ] ଶିବା (ହରିଡା), ନମ୍ବ ( ନିମ୍ବପତ୍ର ) ଲକ୍ଷା ( ଲାଖ ), ଯବ ( ଯବଧାନ ), ଉଗ୍ରା ( ବଚ ), ସର୍ପି (ଗୁଆଘିଅ ) ଏମାନଙ୍କର ଧୂପ ସେହି ମିତ୍ରଙ୍କୁ ପ୍ରଦାନ କଲେ ଜୀର୍ଣ୍ଣଜ୍ୱରଟି ତତ୍କ୍ଷଣାତ୍ ବିଦୂରିତ ହୋଇଯାନ୍ତା । ୧୨ ।

## ଜୀର୍ଣ୍ଣଜ୍ୱରେ ଘୃତମାହ ।

ଘୃତଂ ଧାତ୍ରୀ ଦ୍ରାକ୍ଷା ନଗଧତନୂଜା ଚନ୍ଦନ ବିଷା-
ସ୍ଥିର ଗୋପୀ କ୍ଷଦ୍ରା ଜଳଦ ଯବ ସେବ୍ୟୈ ର୍ବିରଚିତଂ ।

ସୁଭଦ୍ରାଣୀ ବଲ୍ଲୈ ଃ କନକଘଟଗୁଲ୍ୟସ୍ତନଯୁଗେ !
କସ୍ତୂରୀକାନ୍ତେ ! ଘୃତଂ ବିଷମମପି ଜୀର୍ଣ୍ଣଜ୍ୱରମପି । ୧୩ ।

**ଭାଷାର୍ଥ**—ଜୀର୍ଣ୍ଣଜ୍ୱର ବିଷୟରେ ଘୃତବ୍ୟବସ୍ଥା କହୁଅଛୁ । ହେ କନକ-ଘଟ ତୁଲ୍ୟ ସ୍ତନଯୁଗେ ! ହେ ସୁନ୍ଦରୀ ! ଧାତ୍ରୀ (ଅଁଳା), ଦ୍ରାକ୍ଷା, ମଗଧତନୂଜା ( ପିପ୍ପଳୀ ); ରକ୍ତଚନ୍ଦନ, ଶଣା ( ଅରୁଣୀ ), ସ୍ଥିରା ( ଶାଳପର୍ଣ୍ଣୀ ), ଗୋପୀ ( ସୁଆଁଲଇ ), କ୍ଷୁଦ୍ରା ( ଅଙ୍କରାନ୍ତ ), ଜଳଦ ( ମୁଥା ), ଯବ ( ଇନ୍ଦ୍ରଯବ ), ସେବ୍ୟ ( ବେଣାଚେର ), ସୁଭଦ୍ରାଣୀ ( ବାଡ଼ିଅଁଳା ), ବଲ୍ଲମୂଳ ଏମାନଙ୍କ ଦ୍ୱାରା ଘୃତ ପ୍ରସ୍ତୁତ କରି ସେବନ କଲେ ଜୀର୍ଣ୍ଣ ଜ୍ୱରର ବିନାଶ ହୁଏ । ୧୩ ।

## ଜ୍ୱରହରମଙ୍ଗାରକ-ତୈଳମାହ ।

ବଚା ମାଂସୀ ମୂର୍ବ୍ବା ରଜନୀଯୁଗଲଞ୍ଜୀ ବୃହତକା-
ଭଦ୍ରୈନ୍ଦ୍ରା ଲାକ୍ଷାଦ୍ଧି ପ୍ରଭବଲବଣଂ ଭୂର୍ଯ୍ୟକୁଷ୍ଠକଂ ।
କସ୍ତୂରୀକାନ୍ତେ ! ଶୀଘ୍ରଂ ବିଷମମପି ଜୀର୍ଣ୍ଣଜ୍ୱରମପି
ଚତୁଃ ପ୍ରସ୍ଥାବନ୍ତୀ ସନ୍ନିକସ୍ଥିତଂ ତୈଳମୁଦ୍ଧୃତଂ । ୧୪ ।

**ଭାଷାର୍ଥ**—ବିଷମ ଜ୍ୱରରେ ଅଙ୍ଗାରକ ତୈଳ ବିଷୟ କହୁଅଛୁ, ଶ୍ରବଣ କର । ହେ କାନ୍ତେ ! ବଚା ( ଶତାବରୀ ), ମାଂସୀ ( ଜଟାମାଂସୀ ), ମୂର୍ବ୍ବା, ରଜନୀଯୁଗ ( ହଳଦୀ ଓ ଦାରୁ-ହଳଦୀ ), ମଞ୍ଜୀ ( ମଞ୍ଜିଷ୍ଠା ), ବୃହତକା ( ଭେଙ୍ଗାଭେଜ ), ଗନ୍ଧ ( କୁଡ଼ ), ଐନ୍ଦ୍ରୀ ( ଇନ୍ଦ୍ରବାରୁଣୀ ), ଲାକ୍ଷା ( ଲାଖ ), ଅବ୍ଧି ପ୍ରଭବ (ସୈନ୍ଧବ ଲୁଣ) ଏମାନଙ୍କୁ ସମଭାଗରେ ଦୁଇସେର ପର୍ଯ୍ୟନ୍ତ ସଂଗ୍ରହ କରିବ । ପ୍ରଥମେ ଆଠସେର ତିଳତେଲ ମୂର୍ଚ୍ଛା କରି, ତହିଁରେ ଚତୁଃପ୍ରସ୍ଥ (ଆଠ ସେର) ଅବନ୍ତୀ (କାଞ୍ଜିପାଣି) ଦେଇ ସିଦ୍ଧକରିବ । ଉପରେ ସଂଗୃହୀତ ମସଲା ଗୁଣ୍ଡିକ ଶିଳରେ

ବାଷ୍ପ ଷୋଳ ସେର ଜଳରେ ସୋଳ ପାକ କରିବ । ଜଳ ନିଃଶେଷ ହେଲେ କନାରେ ତେଲ ଛାଣି ରଖିବ । ଏହି ତେଲକୁ ଶରୀରର ସର୍ବାଂଶରେ ମର୍ଦ୍ଦନ କଲେ ବିଷମ ଜ୍ୱର ନାଶ ହୁଏ ।

## ମୂଷଳୀଖଣ୍ଡମାହ ।

ଦ୍ୱିପ୍ରସ୍ଥଂ ମୂଷଳୀରଜଃ ଶିତଶିତା ପ୍ରସ୍ଥଦ୍ୱୟଂ କାରୟେତ୍
ବ୍ୟୋଷଂ କ୍ଷୀରଯୁଗଂ ବରା ମଧୂରିକା ଧାନ୍ୟାକମେଥୀଘନାନ୍ ।
ସ୍ୱରୁର୍ଜାତକ କୁଷ୍ଠ ଦେବକୁସୁମଂ ଶୃଙ୍ଗୀ ଶିଚଛ୍ଛିକା-
ଦେବାହ୍ୱାଽଗୁରୁ ଚନ୍ଦନଂ ଜଟିଳକା ଜାତୀଫଳଂ ପତ୍ରକଂ । ୧୫ ।

ଷଡ୍‌ଗ୍ରନ୍ଥା ସୁମନଃପ୍ରବାଳମନଳଶ୍ଚିତ୍ରାଶ୍ୱଗନ୍ଧାନ୍ ସମାନ୍
ସର୍ବେଷାଂ ତନମାନତୋ ଗଦଦ୍ୱରତ୍ନାମ୍ରାଭ୍ରବଙ୍ଗାୟସାଂ ।
ରେଚନ୍ୟାକୁଞ୍ଜବଦ୍ଧସ୍ୟଂ ଚ ମଧୂନଃ ପ୍ରସ୍ଥଦ୍ୱୟଂ ପାଚୟେତ୍
ସୌବର୍ଣ୍ଣପ୍ରମିତୋଽଗଦୋଽୟ ମୂଷଳୀଖଣ୍ଡୋ ଜୟେଦ୍‌ଭକ୍ଷଣାତ୍ ।୧୬।

ରୋଗାନ୍ ଯୋଽୟ କଫୋଦ୍‌ଭବାନ୍ ପବନଜାନ୍ ଜୀର୍ଣ୍ଣ ଜ୍ୱରାନ୍ କାମଳାନ୍
ନାନାଦୋଷଭବଂ ପ୍ରମେହ ନବକଂ ପୁଷ୍ଟିପ୍ରଦୋ ବୃଂହଣଃ ।
ସମାବର୍ଷ୍ୟକଣ୍ଠେ ଭବତ୍ୟନୂଦନଂ ସଂସେବିତୋଽୟଂ ସଖେ !
ପଥ୍ୟଂ ଭୁକ୍ତବତୋ ଜ୍ୱରେ ନହି ଭବେଦ୍ ବୃଦ୍ଧୋ ଭଜେତ୍ଯୌବନଂ ।

**ଭାଷାର୍ଥ—** ହେ ସଖେ ! ମୂଷଳୀଖଣ୍ଡ ବିଷୟ କହୁଅଛି, ଶ୍ରବଣ କର । ମୂଷଳୀ ( ତାଳମୂଳୀଚୂର୍ଣ୍ଣ ୩୨ ପଳ ), ଶ୍ୱେତଶର୍କରା ୪୮ ପଳ, ବ୍ୟୋଷ ( ଶୁଣ୍ଠୀ, ପିପ୍‌ପଳୀ, ମରିଚ ), କ୍ଷୀରଯୁଗ ( କ୍ଷୀରା, କାକୋଳୀ ), ବରା ( ହରଡ଼ା, ବାହାଡ଼ା, ଅଁଳା ), ମଧୂରିକା ( ପାନମହୁରୀ ), ଧାନ୍ୟାକ ( ଧନିଆ ), ମେଥୀ, ଘନ (ମୁଥା), ସ୍ୱରୁର୍ଜାତକ ( ଗୁଡ଼ତ୍ୱକ୍, ଏଳାଇଚ, ନାଗେଶ୍ୱର, ତେଜପତ୍ର ), କୁଷ୍ଠ ( କୁଢ଼ ), ଦେବକୁସୁମ ( ଲବଙ୍ଗ ), ଶୃଙ୍ଗୀ ( କକଡ଼ା-

ଶୁଣ୍ଠୀ ), ଶିଉଳିଫିକା ( ଶଉଳ ), ଦେବାହ୍ୱ ( ଦେବଦାରୁ ), ଅଗୁରୁ, ଚନ୍ଦନ, ଜଟିଳକା [ ଜଟାମାଂସୀ ], ଜାତିଫଳ [ ଜାଇଫଳ ], ପତ୍ରକ [ ତାଳୀଶପତ୍ର ], ଷଡ଼୍‌ଗ୍ରନ୍ଥା [ ବଚ ], ସୁମନଃ ପ୍ରବାଳ [ ଜାଇପତ୍ରୀ ], ଅନଳ ( ରକ୍ତଚିତା ], ଛିନ୍ନା [ ଗୁଳୁଚି ], ଅଶ୍ୱଗନ୍ଧା ଏ ପ୍ରତ୍ୟେକ ଏକପଳ ଲେଖାଏଁ ଏବଂ ତାମ୍ରଭସ୍ମ ଏକପଳ, ଅଭ୍ରଭସ୍ମ ଏକପଳ, ବଙ୍ଗ ଭସ୍ମ ୧ ପଳ, ଲୌହଭସ୍ମ ୧ ପଳ, ରେଚନୀ ( ତିହୁଡ଼ି ) ଚୂର୍ଣ୍ଣ ୮ ପଳ ଏ ସମସ୍ତ ଏକତ୍ର ମନ୍ଦାଗ୍ନି ଦ୍ୱାରା ପାକ କରି, ତହିଁରେ ୪୮ ପଳ ମଧୁ ମିଶାଇ, ଦୁଇତୋଳା ମାତ୍ରାରେ ସକାଳ, ସନ୍ଧ୍ୟାରେ , କିମ୍ବା ମଧ୍ୟାହ୍ନରେ ସେବନ କଲେ କଫଜନିତ ରୋଗ, କାମଳ ରୋଗ, ଜୀର୍ଣ୍ଣଜ୍ୱର, ନାନାଦୋଷ-ଜନିତ ପ୍ରମେହ ରୋଗ ପ୍ରଭୃତି ନାଶ ହୁଏ । ହେ ପ୍ରିୟେ ! ଏହି ଔଷଧ ବଳକାରକ ଓ ଶୁକ୍ରବର୍ଦ୍ଧକ; ଏହା ପ୍ରତ୍ୟହ ନିୟମିତରୂପେ ସେବନ କଲେ କାମୁକ ସ୍ତ୍ରୀମାନେ ବଶୀଭୂତା ହୁଅନ୍ତି । ଏହି ଔଷଧ ସେବନ କରି ପଥ୍ୟରେ ରହିଲେ ଜ୍ୱର ହେବ ନାହିଁ, ଏବଂ ବୃଦ୍ଧ ବ୍ୟକ୍ତି ଏହା ସେବନ କରି ପୁନର୍ଯୌବନ ପ୍ରାପ୍ତ ହୁଏ । ୧୫ । ୧୬ । ୧୭

## ପିପ୍‌ପଳୀମୋଦକମାହ

ପିପ୍ପଳ୍ୟଃ ମଗଧୀଭବଂ ଉଦିତ ଯତ୍ ତଦ୍ଦଣ୍ଡ୍ରଜଂ ଚୂର୍ଣ୍ଣିତଂ
ସତ୍ତ୍ୱଂ ଛିନ୍ନରୁହୋଦ୍ଭବଂ ଜିକୁଡ଼ଂ ଗୋଧାପଦୀ ପ୍ରସ୍ଥକଂ
ରେଚନ୍ୟା କୁଡ଼ବଂ ଶଦାବରଜସଃ ପ୍ରସ୍ଥୈକମତ୍ର କ୍ଷିପେତ୍ ।
ବକ୍ଷ୍ୟେ ଯତ୍ ପଳମାନତୋ ଜଦହରଂ ବ୍ୟୋଷଂ ଚତୁର୍ଜାତକଂ ।୮।

କୁଷ୍ଠଂ ଦର୍ଭଶୃଙ୍ଗିକାକ୍ଷ ମଧୁକଂ ତାଳୀଶଜାତୀଫଳେ
ଜାତୀପତ୍ର ଲବଙ୍ଗବାଳମଧୁରା ମାଂସୀ ବଚା ବାରିଦାନ୍ ।

ଦେବାହ୍ୱାଗୁରୁଚନ୍ଦନଦ୍ୱୟ ଶଟୀଃସେବ୍ୟଂ ବଗକଟ୍ଫଳେ
ଜୀରେ ଦ୍ୱେ ଶତପୁଷ୍ପିକାଂ ମଦନକାଂ ଗସ୍ନାଂ ଘୁଣପ୍ରୀତିଦାଂ । ୧୯ ।

କାକୋଳୀ କୃମିହାଶ୍ୱଗନ୍ଧଜରୁକାଃ ଶ୍ଳକ୍ଷ୍ଣୀକୃତଂ ଚୂର୍ଣ୍ଣମେତ
ସର୍ବେଷାଂ ସିତଶର୍କରାଂ ସମତୁଳାଂ ମନ୍ଦାଗ୍ନିନା ମୋଦକାନ୍
କୃତ୍ୱା ଖାଦନତୋ ଜ୍ୱରଂ ପରିହରେ କ୍ଷୀଣଂ ରସାଦସ୍ଥିତଂ
ଦୁଃସ୍ୱାମିପ୍ରଭବଂ ସଖେ ! ସୁବହମଂ ନାନାବିଧଂ ଦୋଷଜଂ । ୨୦ ।

**ଭାଷାର୍ଥ**—ହେ ସଖେ ! ପିପ୍ପଳୀ ମୋଦକ ବିଷୟ କହୁଅଛୁ ଶୁଣ । ପିପ୍ପଳୀ-ତଣ୍ଡୁଳଚୂର୍ଣ୍ଣ ୪୮ ପଳ, ଛିନ୍ନରୁହୋଦ୍ଭବ ସତ୍ତ୍ୱ (ଗୁଳୁଚୀ-ସାର ) ୧୨ ପଳ, ଗୋଧାପଦୀ ( ତାଳମୂଳୀ ଚୂର୍ଣ୍ଣ ) ୧୬ ପଳ, ରେଚନୀ ( ତନ୍ତୁଡ଼ ) ୪ ପଳ, ବଦାରିରଜଃ ( ଭୂଇଁକଖାରୁ ଚୂର୍ଣ୍ଣ ) ୧୬ ପଳ, ତ୍ରିକଟୁ ( ଶୁଣ୍ଠି, ପିପ୍ପଳୀ, ମରିଚ ), ଚାତୁର୍ଜାତକ [ ତେଜପତ୍ର, ଏଲାଇଚ, ନାଗେଶ୍ୱର, ଗୁଡ଼-ତ୍ୱକ୍ ], କୁଡ଼, କଙ୍କଡ଼ାଶୃଙ୍ଗୀ, ଯଷ୍ଟିମଧୁ, ତାଳୀଶପତ୍ର, ଜାଇଫଳ, ଜାଇପତ୍ରୀ, ଲବଙ୍ଗ, ବାଳ [ କୁରୁବେଲ ], ମଧୁର [ ପାନମଧୁରୀ ] ମାଂସୀ ( ଜଟାମାଂସୀ ), ବଚ, ବାରିଦ ( ମୁଥା ), ଦେବାହ୍ୱା ( ଦେବଦାରୁ ), ଅଗୁରୁ, ଚନ୍ଦନଦ୍ୱୟ (ଶ୍ୱେତ ଓ ରକ୍ତଚନ୍ଦନ), ଶଟୀ (ଗନ୍ଧଶୁଣ୍ଠି), ସେବ୍ୟ (ବେଣା-ଚେର), ବଗ [ ହରିଡ଼ା, ବାହାଡ଼ା , ଅଁଳା ], କଟ୍ଫଳ, ଜୀର ଦ୍ୱୟ ( କଳା ଓ ଧଳା ଜୀର ), ଶତପୁଷ୍ପିକା ( ଶଉପ ), ମଦନକା ( ମେଥୀ, ଗସ୍ନା, ଘୁଣପ୍ରୀତିଦା ) ( ଅରୁଣୀ ), କାକୋଳୀ (କାଙ୍କୋଲ) କୃମିହା (ବିଡ଼ଙ୍ଗ), ଅଶ୍ୱଗନ୍ଧା, ଲକ୍ଷା, ଏମାନଙ୍କରୁ ପ୍ରତ୍ୟେକ ଏକତୋଳା ଲେଖାଏଁ ଚୂର୍ଣ୍ଣ କରି ଏକତ୍ର କରିବ । ଏ ସମସ୍ତ ଚୂର୍ଣ୍ଣର ସମାନ କନ୍ଦ କମ୍ପା ଚିନି ଯୋଗ କରି ମନ୍ଦାଗ୍ନିରେ ପାକ କରି ଅନ୍ଦାଜ ଦୁଇତୋଳା ମାପାରେ ମୋଦକ ପ୍ରସ୍ତୁତ କରିବ । ଏହା ସକାଳ ସନ୍ଧ୍ୟାରେ

ଧାରୋଷ୍ଣ ଦୁଗ୍ଧ କିମ୍ବା ଜଳ ସହିତ ସେବନ କଲେ, ଜୀର୍ଣ୍ଣ ଜ୍ୱର, ରସାବଶିଷ୍ଟ ବିଷମ ଜ୍ୱର ଏବଂ ଦୁଃସ୍ୱାମିଠାରୁ ଜାତ ନାନାବିଧ ବିଷମ ରୋଗମାନ ଅପଗତ ହୁଏ । ପ୍ରକାଶ ଥାଉ କି, ଏହି ଜଗତରେ ତାଳମୂଳୀ ପରବର୍ତ୍ତୀରେ କେହି କେହି ହଂସପାଦ ବ୍ୟବହାର କରିଥାନ୍ତି । ୧୮ । ୧୯ । ୨୦ ।

## ପୁନରପ୍ୟାହ ।

ଗୋଧାତଦ୍ଧମାସହନିର୍ମିତେସ୍ତୁଂ
ସସେବ୍ୟମାନେଣ୍ଡ୍ରକା କୃଶାଙ୍ଗି !
ସୌଦ୍ରୋତଯୁକ୍ତା ହବିଷା ପ୍ରଯୁକ୍ତା
କାନ୍ତେ ! ସୁଶାନ୍ତେ ବିଷମଂ ନିହନ୍ୟାତ୍ । ୨୧ ।

**ଭାବାର୍ଥ**—ପୁନଶ୍ଚ କହୁଅଛନ୍ତି । ହେ କୃଶାଙ୍ଗି ! ହେ କାନ୍ତେ ! ହେ ଶାନ୍ତଶୀଳେ! ତାଳମୂଳୀ ଦୁଇମସା, ବ୍ରୀହି ଛମସା ଏକତ୍ର ବାଟି ଲଣ୍ଡୁ ପିଠା କରି ଘିଅ, ମହୁ ଓ ଚିନିସହିତ ସେବନ କଲେ ବିଷମ ଜ୍ୱର ବିନଷ୍ଟ ହୁଏ । ୨୧ ।

## ଦୋଷଜ-କର୍ମଜ-ଜ୍ୱରୟୋ ର୍ବିଶେଷମାହ ।

ସ୍ମରହରପରିଚର୍ଯ୍ୟା ବିଷ୍ଣୁନାମ୍ନାଂ ସହସ୍ରଂ
ଦ୍ୱିଜଗୁରୁଜନପୂଜା-ଶ୍ୱତ୍ଥସେବା . ପ୍ରଦାନଂ ।
ଗଜମୁଖ ପରିଚର୍ଯ୍ୟା ଚଣ୍ଡିକାସ୍ତୋତ୍ରପାଠୋ
ଗ୍ରହଗଣପରିତୁଷ୍ଟି ର୍ଦ୍ଦ୍ୟୁଷ୍ଟଜ୍ୱରଣାଂ । ୨୨ ।

**ଭାବାର୍ଥ**—ଦୋଷଜ ଓ କର୍ମଜ ଜ୍ୱରଦ୍ୱୟ ବିଷୟରେ ବିଶେଷ ବିଧାନ କହୁଅଛନ୍ତି । ଶିବାର୍ଚ୍ଚନ, ବିଷ୍ଣୁ-ସହସ୍ରନାମ-ପାଠ, ବ୍ରାହ୍ମଣ ଓ ଗୁରୁଜନ ପୂଜା, ଅଶ୍ୱତ୍ଥ ପ୍ରଦକ୍ଷିଣ, ସ୍ୱାସ୍ତ୍ୟସ୍ତିର, ଗଣେଶାର୍ଚ୍ଚନ,

ଚଣ୍ଡୀ-ସ୍ତୋତ୍ର-ପାଠ, ଗଙ୍ଗା-ପ୍ରାୟଶ୍ଚିତ୍ତ ପ୍ରଭୃତି କର୍ମମାନ ଅଷ୍ଟବିଧ ଜ୍ୱରମାନଙ୍କର ଅପହାରକ ଅଟନ୍ତି । ହେ କୃଶାଙ୍ଗି ! କେବଳ ଦୋଷଜ ଜ୍ୱରକୁ ଔଷଧ ନାଶକରେ ଏବଂ କର୍ମଜ ରୋଗକୁ ଶିବାର୍ଚ୍ଚନ ପ୍ରଭୃତି ଦୈବପ୍ରୟୋଗ ବିନାଶ କରେ । ୨୨ ।

## ଜ୍ୱରେ ସ୍ନାନାଦିକରଣ-କାଳନିୟମମାହ ।

ସ୍ନାନଂ ପର୍ଯ୍ୟଟନଂ ଦିରୂଦ୍ଧମଶନଂ ବ୍ୟାୟାମକଂ ମୈଥୁନଂ
ତାବନ୍ନୋ ପରିଷେବଣଂ ପ୍ରକୁରୁତାଦ୍ ଯାବଦ୍ ବଳୀ ନୋ ଭବେତ୍ ।
ସୂର୍ଯ୍ୟାଦ୍ଭୋଜନମସ୍ତଗେ ଦିନକରେ ରୋଗୀ ତଥା ରୋଗବାନ୍
ସ୍ତୋକଂ କୋକିଳ-କୋମଳ-ପ୍ରବଚନେ ! ରକ୍ତୋତ୍ପଳନ୍ନେତ୍ରଗଳେ ।୨୩।

**ଭାଷାର୍ଥ**—ଜ୍ୱରରେ ସ୍ନାନର ସମସ୍ତ ସମ୍ବନ୍ଧରେ ନିୟମ (ବ୍ୟବସ୍ଥା) କହୁଅଛି । ହେ କୋକିଳକୋମଳବଚନେ ! ହେ ରକ୍ତୋତ୍ପଳରତ୍ନମେଖଳେ ! ରୋଗୀ ଯେତେବେଳଯାଏ ବଳବାନ ହୋଇ ନ ଥାଏ, ସେପର୍ଯ୍ୟନ୍ତ ସ୍ନାନ, ପଥଶ୍ରମ, ଦିରୁଦ୍ଧ ଭୋଜନ ଅର୍ଥାତ୍ ଦିନମଧ୍ୟରେ ଦୁଇଥର ଭୋଜନ, ବ୍ୟାୟାମ, ମୈଥୁନ (ସ୍ତ୍ରୀ-ସମ୍ଭୋଗ) ଏବଂ ସୂର୍ଯ୍ୟାସ୍ତ ପରେ ଆହାର ଏହାସବୁ କରିବ ନାହିଁ । ଦିନମଧ୍ୟରେ ଥରେମାତ୍ର ଅଳ୍ପ ଓ ଲଘୁ ଆହାର କରିବ । ୨୩ ।

## ସର୍ଗଂ ପ୍ରଶଂସନ୍ନାହ ।

କାବ୍ୟେ କୌତୁକ-ଦୀପକେ ବିରଚିତେ ନାରାୟଣେନାଗମତ୍
ଦ୍ୱୈତୀୟଃ ପ୍ରତିଭେଷଜଂ ସୁଖକରୈଃ କୌତୁହଳୈଃ ପଣ୍ଡିତାଃ ।
ଯଂ ଦୃଷ୍ଟ୍ୱା ମଧୁହାରକାଃ ପ୍ରମୁଦିତାଃ ଖର୍ଜିଂ ଗତାଃ ସାତ୍ତ୍ୱିକଂ
ସର୍ଗୋଽସୌ ସୁହୃଦାଂ ପ୍ରମୋଦକୁଶଳୋ ଜୂର୍ତ୍ତିଘ୍ନୋଯୋଗପ୍ରଥଃ । ୨୪ ।

**ଭାଷାର୍ଥ**—ସର୍ଗ ପ୍ରଶଂସା ବା ଫଳଶ୍ରୁତି । ନାରାୟଣ କବିଙ୍କଦ୍ୱାରା ବିରଚିତ ଏହି କୌତୁକ-ଦୀପକ ନାମକ କାବ୍ୟରେ ଦ୍ୱିତୀୟ ସର୍ଗ ପରି-ସମାପ୍ତ ହେଲା । ଏହି ସର୍ଗଟି ପ୍ରତ୍ୟେକ ଔଷଧ ବିଷୟରେ ସୁଖକର କୌତୂହଳ ଥିବା ହେତୁରୁ ସହୃଦୟମାନଙ୍କର ଆନନ୍ଦପ୍ରଦ ହୋଇଅଛି; ଏବଂ ଏହି ସର୍ଗରେ ଜ୍ୱରନାଶକ ଯୋଗମାନ ପ୍ରକାଶିତ ହୋଇଥିବାରୁ ବିଜ୍ଞ ବୈଦ୍ୟମାନେ ତାହା ଦେଖିକରି ସାତ୍ତ୍ୱିକ କୀର୍ତ୍ତିଲାଭ ଆଶାରେ ଆନନ୍ଦିତ ହେବେ । ୨୪ ।

ଦ୍ୱିତୀୟ ସର୍ଗ ସମାପ୍ତ ।



## ତୃତୀୟ ସର୍ଗଃ ।

## ଅତ୍ର ସର୍ଗେ ଜ୍ୱରାତିସାରାଦି କ୍ରିମିରୋଗ ପର୍ଯ୍ୟନ୍ତଂ ଚିକିତ୍ସିତମାହ ।

ଅଥ ବଧାରୟ ତନ୍ୱି ! ସୁକୁନ୍ତଳେ ! କୁଶଳ-କୋକିଳ-କୋମଳଭାରତି !
ଜ୍ୱରମୁଖେଽପ୍ୟତିସାର ଗଦାଦିକେ ସକଳସମ୍ମତ ବୈଦ୍ୟକସଦ୍ଧୃତଂ ।୧।

**ଭାଷାର୍ଥ**—ଏହି ତୃତୀୟ ସର୍ଗରେ ଜ୍ୱରାତିସାରଠାରୁ ଆରମ୍ଭ କରି କ୍ରିମିରୋଗ ପର୍ଯ୍ୟନ୍ତ ଚିକିତ୍ସା ବିଷୟ କହୁଅଛନ୍ତି । ହେ କୁଶଳ-କୋକିଳ-କୋମଳଭାଷିଣି ! ହେ ସୁକୁନ୍ତଳେ ! ହେ ତନ୍ୱି ! ଜ୍ୱରରୋଗ ବିଷୟ କହିବାପରେ ଏ ସର୍ଗରେ ଅତିସାର ରୋଗଠାରୁ ଆରମ୍ଭ କରି କ୍ରିମିରୋଗ ପର୍ଯ୍ୟନ୍ତ ସକଳ ବୈଦ୍ୟରାଜଙ୍କ ଦ୍ୱାରା ସମାଦୃତ ଯେଉଁ ଚିକିତ୍ସା ବିଷୟ କହୁଅଛି, ତାହା ତୁମ୍ଭେ ସାବଧାନ ହୋଇ ଶ୍ରବଣ କର । ୧ ।

## ଜ୍ୱରାତିସାରହର-କଷାୟମାହ ।

ଯବକବଥବଷାସୁରନାଗରୈଃ ସମଧୁ ଷମ୍ୱରମସ୍ୟତ ସତ୍ୱରଂ ।
ଅଥ ନଠାମ୍ବୁବଷାଧନନାଗରମୂଦକୃତଂ ହ୍ୟତସାରସହଜ୍ୱରଂ । ୨ ।

ଭାଷାର୍ଥ—ଜ୍ୱରାତିସାରନାଶକ ପାଚନ ବିଷୟ କହୁଅଛି । ହେ ସୁକୁନ୍ତଳେ ! ଯବ (ଇନ୍ଦ୍ରଯବ), କଥଡ (ଡଗଇଡା), ବିଷା (ଅତୁଷୀ), ସୁର (ଦେବଦାରୁ), ନାଗର (ଶୁଣ୍ଠୀ) ଏମାନଙ୍କ ପାଚନ ମଧୁପକ୍ଷେପ କରି ସେବନ କଲେ, ଜ୍ୱରାତିସାର ନଷ୍ଟ ହୁଏ । ପୁନଶ୍ଚ ନଠ (ବଳ), ଅମ୍ବୁ (କରୁବେଲା), ବିଷା (ଅତୁଷୀ), ଧନ (ଧନିଆ), ନାଗର (ଶୁଣ୍ଠୀ), ଅମ୍ବୁଦ (ମୁଥା) ଏମାନଙ୍କ ପାଚନ ମଧୁସହିତ ସେବନ କଲେ ଉକ୍ତ ଜ୍ୱରାତିସାର ରୋଗ ଅପସୃତ ହୁଏ । ୨ ।

### ଅପରଂ ଚ ।

ପ୍ରସୂନଂ ଦେବାନାଂ ବିଧିଦ ଜରଣଂ ମାଳତ ଫଳଂ
ଜମ୍ୱାଚୂର୍ଣ୍ଣଂ ତୁଲ୍ୟଂ କୁସୁମରସଯୁକ୍ତଂ ହିତରବଂ ।
ଜମ୍ୱେଚୂର୍ଣ୍ଣଂ ଚୂର୍ଣ୍ଣଂ କମଳଲପନେ ! ବହ୍ନିହଦନଂ
ନରମଂ ଯାମଂ ବା ଜ୍ୱରଯୁତ ମତିସାର ନବହଂ । ୩ ।

ଭାଷାର୍ଥ—ହେ ଚନ୍ଦ୍ରମୁଖି ! ଆଉ ମଧ୍ୟ, ଦେବପ୍ରସୂନ (ଲବଙ୍ଗ), ବିଧିଦ ଜରଣ (ଧଳାଜୀର), ମାଳତଫଳ (ଜାଇଫଳ), ଜମ୍ୱାଚୂର୍ଣ୍ଣ (ଭଙ୍ଗାଇ ପତ୍ରଚୂର୍ଣ୍ଣ) ଏ ସମସ୍ତ ସମାନଭାଗରେ ମିଶାଇ ମହାକ ପରିମାଣରେ ମଧୁସହିତ ସେବନ କଲେ ଜ୍ୱରାତିସାରକୁ ନଷ୍ଟ କରେ । କେହି କେହି କହନ୍ତି, ଲବଙ୍ଗ, ଜୀର ଓ ଜାଇଫଳ ଏ ତିନୋଟିର ଚୂର୍ଣ୍ଣ ଯେତେ, ସେତେ ପରିମିତ

ଗଙ୍ଗାଇପଡ଼ର ଚୂର୍ଣ୍ଣ ଏକତ୍ର କରି ମଧୁ ସହିତ ସେବନ କଲେ ଭକ୍ତ ଜଗତସାର ନାଶ ହୁଏ । ପ୍ରକାଶ ଥାଉକି, ଏହି ଭଲ୍ଲାତକ ଚୂର୍ଣ୍ଣ ଅଗ୍ନିମାନ୍ଦ୍ୟ ସହିତ ଆମ କିମ୍ବା ଆମଶୂନ୍ୟ ଜ୍ୱରାତିସାରକୁ ବିନାଶ କରଇ । ୩ ।

## ପୁନରପ୍ୟାହ ।

ମଦାପାଠାଧାନ୍ୟା ଭୂବନ ବନ ମୋଚ୍ଚମଉପତ—
ପ୍ରଜା ଶ୍ରୀ ଘଟ୍ୟାବା ମରକୁସୁମ ଜାତୀଫଳବିଷୈଃ ।
ଶଚୀନାଥୈଷ୍ଟଙ୍କୈ ର୍ବିରଚିତମିଦଂ କ୍ଷୌଦ୍ରସହିତଂ
ଜୟେତ୍ତହ୍ନି କ୍ଷିପ୍ରଂ ସାମଂ ସରୁଜମରୁଜଂ ଜୂର୍ବିସହିତଂ । ୪ ।

ଭାଷାର୍ଥ—ପୁନରପି କହୁଅଛନ୍ତି ଯେ, ମଦା (ଲୋଧ, ଧାତୁକୀ), ପାଠା (ଅକାନବିନ୍ଧ), ଧାନା [ ଧନିଆ ] ଭୂବନ ( ଶୁଣ୍ଠୀ ), ବନ (କୁରୁଡବଲ୍ଲୀ),ମୋଚ୍ଚ (ମୋଚରସ), ଅମରପତିପ୍ରଜା (ଇନ୍ଦ୍ରଯବ) ଶ୍ରୀ (ବେଲଶୁଣ୍ଠା), ଘଟ୍ୟ (ଜୀରା), ଅବ୍ଦ (ମୁଥା), ଅମର କୁସୁମ ( ଲବଙ୍ଗ ), ଜାଇଫଳ, ବିଷା ( ଅତୁଷୀ ), ଶଚୀନାଥ (ପିତ୍ତ କୋରୁଆଁ ଛେଲି), ଟଙ୍କ ( ଟାଙ୍ଗଣା ଖଇ ) ଏହି ସମସ୍ତ ସମାନଭାଗରେ ଚୂର୍ଣ୍ଣକରି ମଧୁ ସହିତ ସେବନ କଲେ ଆମସଯୁକ୍ତ କିମ୍ବା ଆମରହିତ ଜ୍ୱରାତିସାର ଦୂରୀଭୂତ ହୁଏ । ଏହାକୁ ଗଙ୍ଗାଧର ଚୂର୍ଣ୍ଣ କହନ୍ତି । ୪ ।

## ଅହିଫେନାଦ୍ୟ ମାହ ।

ଅହେଃ ଫେନାଜାଜୀ ସୁରକୁସୁମ ପିଚ୍ଛା ପ୍ରତିବିଷା—
ଭବକ୍ଷୋଦୈଃ ସାର୍ଦ୍ଧଂ କମଳବଦନେ ! ହନ୍ତ୍ୟମୁଖମିବ ।
ଅତୀସାରଂ ଘୋରଂ ସରୁଜମରୁଜଂ ରକ୍ତ ସହିତଂ
ତ୍ରିଦୋଷୈଃ ସର୍ବୈର୍ବା ରଚିତ ମରବିନ୍ଦଂ ବିଜୟତେ ।୫।

**ଭାଷାର୍ଥ**—ଅତିସାର ରୋଗରେ ଅହିଫେନଘଟିତ ଔଷଧ । ହେ ସଖି ! ହେ ଚନ୍ଦ୍ରମୁଖି ! ତୁମ୍ଭର ମୁଖ ପଦ୍ମବିଜୟୀ ହେଉଅଛି ଏହି ଔଷଧ, ଆମଯୁକ୍ତ କିମ୍ବା ଆମରହିତ, ଅଥବା ସରକ୍ତ, ଦ୍ୱିଦୋଷ କିମ୍ବା ତ୍ରିଦୋଷ ଜନିତ ସମସ୍ତ ଅତିସାର ରୋଗର ବିଜେତା ହୁଏ । ଔଷଧ ଯଥା—ଅହିଫେନ (ଅଫିମ), ଅଜାଜୀ (ଜୀରା), ସୁରକୁସୁମ (ଲବଙ୍ଗ), ପିଚ୍ଛା (ମୋଚରସ), ପ୍ରତିବିଷା (ଅତୁଷୀ) ଏମାନଙ୍କର ଚୂର୍ଣ୍ଣ ଏକତ୍ର କରି ଏକମଷା ମାତ୍ରାରେ ମଧୁ ସହିତ ସେବନ କରିବ । ୬ ।

## ଅଥ ଗ୍ରହଣ୍ୟାଂ ।

ବଳୀରସୋଽଭ୍ରକ୍ଷାର ଯୁଗ୍ମକୁଷ୍ଠବହ୍ନି ବାରିଦୋଗ୍ରଗନ୍ଧଯବ୍ୟ ଯୁଗ୍ମବହ୍ନିତୁଣ୍ଡରାମଠଂ ।
ଦ୍ୱିରନ୍ତ ମାଗଧୀ ବରୋଷଣ ତ୍ରୟାବ୍ଧି ଜାଦ୍ୟ ସର୍ଜିକାଦ୍ୟ ଗେହଧୂମସଂକଟୈଃ ।
ପ୍ରକଳ୍ପିତଂ ରଜସ୍ତୁଲାସମଂ ଜମ୍ବୋଽଭବଂ ପିଚୁନ୍ମିତଂ ନଶେଦ୍ଧୃତଂ ହ୍ୱକାଞ୍ଜିକାନୁପାନତୋଽ
ତ ସାରସଗ୍ରହାମୟ ଜ୍ୱରପ୍ଲି ମାନ୍ଦ୍ୟ ମାରୁତପ୍ରମେହଶୋଥକାସାକାଦିକଂ ହରେତ୍ ॥

## ନାୟିକାଦ୍ୟ ଚୂର୍ଣ୍ଣମିଦଂ ।

**ଭାଷାର୍ଥ**—ଅନନ୍ତର ଗ୍ରହଣୀ ରୋଗରେ ନାୟିକାଦ୍ୟ ଚୂର୍ଣ୍ଣ । ବଳୀ [ ଶୋଧିତ ଗନ୍ଧକ ], ରସ [ ଶୋଧିତ ପାରଦ ], ଅଭ୍ରଭସ୍ମ, କ୍ଷାରଯୁଗ୍ମ [ କ୍ଷାର, କଳାକ୍ଷାର ], କୁଷ୍ଠ ( କୁଡ଼ ), ବହ୍ନି (ରକ୍ତଚିତା), ବାରିଦ [ମୁଥା], ଉଗ୍ରଗନ୍ଧ (ବଚ), ଯବ୍ୟଯୁଗ୍ମ (ଯୁଆଣୀ, ଅଜମୋଦା), ବହ୍ନିତୁଣ୍ଡ (କୁଚିଲା), ରାମଠ (ହେଙ୍ଗୁ) ଦ୍ୱିରନ୍ତମାଗଧୀ ( ଗଜପିପ୍ପଳୀମଞ୍ଜି ) ବରା (ତ୍ରିଫଳା = ହରଡ଼ା, ବାହାଡ଼ା, ଅଁଳା ), ଉଷଣତ୍ରୟ ( ଶୁଣ୍ଠି, ପିପ୍ପଳି, ମରିଚ ), ଅବ୍ଧିଜାଦ୍ୟ (ପଞ୍ଚଲବଣ), ସର୍ଜିକାଦ୍ୟ ( ତ୍ରିକ୍ଷାର = ଯବକ୍ଷାର, ସାଜୀକ୍ଷାର, ଟାଙ୍ଗଣାଖଇ), ଗେହଧୂମ ( ଅଳନ୍ଧୁ ), ସକଳ

(ବଡ଼ଙ୍ଗ) ଏମାନଙ୍କର ଚୂର୍ଣ୍ଣ ସମାନ ବଜସ୍ତାଚୂର୍ଣ୍ଣ ଏକତ୍ର କରି ପାତ୍ରରେ ରଖିବ । ଏହି ଚୂର୍ଣ୍ଣ, ପ୍ରାତଃକାଳରେ କାଞ୍ଜିପାଣି ଅନୁପାନରେ ଦୁଇମସା ମାତ୍ରାରୁ ଆରମ୍ଭ କରି ସ୍ତରମସା ପର୍ଯ୍ୟନ୍ତ ସେବନ କଲେ ଅତିସାର, ସଗ୍ରହଣୀ, ଉଦରାମୟ, ଜ୍ଵର, ଅଗ୍ନିମାନ୍ଦ୍ୟ, ଅରୁଚି, ପ୍ରମେହ, ଶୋଥ, କାଶ ପ୍ରଭୃତି ରୋଗମାନଙ୍କୁ ହରଣ କରେ । ୬ ।

## ଅନଙ୍ଗ ଶେଖର ମୋଦକମାହ ।

ତ୍ରିକଟସ୍ତ୍ରାଗ୍ନି ଯଷ୍ଟି କୁଷ୍ଠ ସୈନ୍ଧବୋଗ୍ରଗନ୍ଧଦୀପ୍ୟଯୁଗ୍ ମେଥିକାଛପାଶୃଣୀଗଜୋ-ଷଣାଲବଙ୍ଗମାଳତୀଫଳପ୍ରବାଳ କର୍କଟାଜମୋଦ ଯୁଗ୍ମବେଷଣାମରୈଃ କ୍ଷୁରୈଃ । ବିଦାରିକା ଶତାବରୀ ବହୁପ୍ରଜାଳ ମର୍କଟୀସଶାରିବା ନବାମୟା ପତ୍ରାଜସ୍ତା-ଚ୍ଚକରକୋଃଟ ମାନତଃ ସମଂ ସମାକ୍ଷିତାଖିଳୈଃ ଖିଳାମସ୍ତଂ ଜସ୍ତେଦନଙ୍ଗ-ଶେଖରଃ । ୭ ।

**ଭାଷାର୍ଥ**—ଗ୍ରହଣୀ ରୋଗରେ ଅନଙ୍ଗ ଶେଖର ମୋଦକ ବ୍ୟବସ୍ଥା । ତ୍ରିକଟସ୍ତୁ ( ତ୍ରିକଟୁ=ହରଡ଼ା, ବାହାଡ଼ା, ଅଁଳା; ତ୍ରିଫଳା= ଶୁଣ୍ଠୀ, ପିପ୍ପଳୀ, ମରିଚ; ତ୍ରିଜାତ=ଗୁଡ଼ତ୍ଵକ୍, ଏଲାଇଚ, ତେଜପତ୍ର ), ଅଗ୍ନି ( ଚିତାମୂଳ ) ଯଷ୍ଟିମଧୁ, କୁଡ଼, ସୈନ୍ଧବ ଲବଣ, ଉଗ୍ରଗନ୍ଧା (ବଚ), ଦୀପ୍ୟଯୁଗ୍ମ (ଜୀର, କଳାଜୀରା), ମେଥୀ, ଛପା ( ଦାରୁ ହଳଦୀ ), ଗନ୍ଧଶୁଣ୍ଠୀ, ଗଜୋଷଣା ( ଗଜପିପ୍ପଳୀ ), ଲବଙ୍ଗ, ମାଳତୀଫଳ ( ଜାଇଫଳ ), ପ୍ରବାଳ ( ଡାଳୀଶପତ୍ର ), କକଡ଼ାଶୃଙ୍ଗୀ, ଅଜମୋଦ ଯୁଗ୍ମ ( ଯୁଆଣୀ, ବନଯୁଆଣୀ ), ବେଷଣା ( ଧନିଆ ), ଅମର ( ଗୁଳୁଚୀ ), କ୍ଷୁର (କୋଇଲେଖାମଞ୍ଜି), ବିଦାରିକା ( ଭୁଇଁ-କଖାରୁ ), ଶତାବରୀ (ଛତୁଆରୀ), ବହୁପ୍ରଜାଳ (ତାଳମୂଳୀ), ମର୍କଟୀ ( ବାଇଡ଼ଙ୍କମଞ୍ଜି ), ଶାରିବା ( ଚେମଣୀକଇମୂଳ ) ଏ ସମସ୍ତ ସମାନ ଭାଗରେ ଆଣି ଚୂର୍ଣ୍ଣ କରିବ । ସର୍ବ ସମାନ

ବିଜୟା ଚୂର୍ଣ୍ଣ ଏକତ୍ର କରି, ସମସ୍ତ ଚୂର୍ଣ୍ଣ ସହିତ କନ୍ଦ ମିଶାଇ ଗୁଆଘିଅ ଓ ମଧୁ ଦେଇ ମୋଦକ ବାନ୍ଧିବ । ବଳ ଓ ଅଗ୍ନି ଅନୁସାରେ ଏକତୋଳାଠାରୁ ଆରମ୍ଭ କରି ସେବନ କଲେ ଏହା ସର୍ବପ୍ରକାର ଗ୍ରହଣୀରୋଗ ବିଜୟୀ ହୁଏ ।

## ମଦନ ମୋଦକମାହ ।

ବ୍ୟୁଧାନ୍ୟଯୁଗ୍ମ ସିନ୍ଧୁଜାତ ଯଷ୍ଟିକେତକୀଶଣି ଦ୍ବିମ.ଜମୋଦ ଯୁଗ୍ମମେଥିକା-
କ୍ଷୀରକଣ୍ଟଫଲାବଣ୍ଠିଜାତକଶୁଣ୍ଠମାଗଧୀମରିଚପତ୍ରକୈଃ କୃତଂ ସମାଂଶଭାଗଚୂର୍ଣ୍ଣତୋ ରଜଃ ।
ସର୍ବସମା ଭଙ୍ଗାରଜସ୍ତତଃ ସମାଶିତା ଘୃତେନ ପିଣ୍ଡିତ[illegible]ମୋଦକ ଶିତାଚନ୍ଦ୍ର-
ଚର୍ଚ୍ଚିତା ବଳାଗ୍ନିରୂପଦାୟକୋ ଜ୍ବରାତିସାରସଙ୍ଗ୍ରହାପହୋଽୟ ସୌଖ୍ୟଦାୟକଃ । ୮ ।

**ଭାଷାର୍ଥ**—ଅତିସାର ଗ୍ରହଣୀ ପ୍ରକୃତରେ-ମଦନ ମୋଦକ ।

କୁଢ଼, ଜୀର, କଳାଜୀର, ସୈନ୍ଧବ ଲୁଣ, ଯଷ୍ଟିମଧୁ, ବେଷଣ (ଧନଆଁ) କର୍ପୂର, ଯୁଆଣୀ, ଅଜମୋଦା, ମେଥୀ, କ୍ଷୀର (କକଡ଼ାଶୃଙ୍ଗୀ), କାଫଡ଼, ଫଳ (ହରଡ଼ା, ବାହାଡ଼ା, ଅଁଳା), ତ୍ରିଜାତ (ଏଲାଇଚ, ନାଗେଶ୍ବର, ତେଜପତ୍ର), ଶୁଣ୍ଠ (ଶୁଣ୍ଠୀ), ମାଗଧୀ ( ପିପ୍ପଳୀ ), ମରିଚ, ପତ୍ରକ ( ତାଳୀଶପତ୍ର ) ଏ ସମସ୍ତ ସମାନ ଭାଗରେ ଆଣି ଏକତ୍ର ଚୂର୍ଣ୍ଣ କରିବ । ଚୂର୍ଣ୍ଣର ସମାନ ବିଜୟା ଚୂର୍ଣ୍ଣ ମିଶାଇବ । ସମସ୍ତ ଚୂର୍ଣ୍ଣ ଯେତେ ସେତିକ ପରିମାଣରେ କନ୍ଦ ଯୋଗକରି ମନ୍ଦାଗ୍ନିରେ ପାକ କରିବ; ଉପରେ ଡାଳଚିନି, ଏଳାଇଚ, ତେଜପତ୍ର, କର୍ପୂର ଏମାନଙ୍କର ଚୂର୍ଣ୍ଣ ଦେଇ ମୋଦକ ପ୍ରସ୍ତୁତ କରିବ । ଏହି ମୋଦକରୁ କ୍ରମଶଃ ଏକତୋଳାଠାରୁ ଦୁଇତୋଳା ପର୍ଯ୍ୟନ୍ତ ଖାଇଲେ ଅତିସାର ଜନିତ ଗ୍ରହଣୀ ରୋଗ, ଜ୍ବରାତିସାର ଓ ଅରୁଚି ରୋଗର ବିନାଶ ହୁଏ, ଏବଂ ଏହି ମୋଦକ ଅତି ସୁଖପ୍ରଦ ଓ ବଳାଗ୍ନିରୂପଦାୟକ ଅଟେ । ୮ ।

## ଅଥାର୍ଶହର ବୃଦ୍ଧଦାରକ ମୋଦକ ମାହ ।

ମତ୍ତଦନ୍ତିଗମନେ ! ସୁକୁନ୍ତଳେ ! ମାରକେଳିକୁଶଳେ ! ପିକସ୍ୱରେ !
ବୃଦ୍ଧଦାରଦହନାସ୍ୟପିଷ୍ଟପୈ ମୌଦକଃସଗୁଡ଼କୋଽର୍ଶସାଂ ହୃତଃ ।୯।

**ଭାଷାର୍ଥ**—ଅନନ୍ତର ଅର୍ଶରୋଗନାଶକ ବୃଦ୍ଧଦାରକ ମୋଦକ । ହେ ମତ୍ତଗଜଗମନେ ! ହେ ସୁକେଶି ! ହେ କାମକେଳି-କୁଶଳେ ! ହେ କୋକିଳସ୍ୱରେ ! ଶୋଧିତ ବୃଦ୍ଧଦାରକ ବୀଜ, ଦହନାସ୍ୟ (ସ୍ୱଳ୍ପମନ୍ତ୍ରୀ), ପିଷ୍ପଳ (ଶୁଣ୍ଠୀ) ଏବଂ ପୁରୁଣା ଗୁଡ଼ ଏକତ୍ର ମୋଦକ ପ୍ରସ୍ତୁତ କରି ଅର୍ଦ୍ଧତୋଳା ପରିମାଣରେ ସେବନ କଲେ ଅର୍ଶରୋଗର ଧ୍ୱଂସ ହୁଏ । ୯ ।

## ଅଥାଗ୍ନିମାନ୍ଦ୍ୟ ।

ମତ୍ତ-ବାରଣଗତେ ! ସୁମଧ୍ୟମେ ! ବହ୍ନିମାନ୍ଦ୍ୟରୁଜ ସାମ୍ପ୍ରତଂ ପ୍ରିୟେ !
ସିନ୍ଧୁଜାନଳକଣା-ହରିତକ୍ୟ-କଲ୍କିତଂ ଜଳଯୁତଂ ପ୍ରଭାତତଃ । ୧୦ ।

**ଭାଷାର୍ଥ**—ଅଗ୍ନିମାନ୍ଦ୍ୟ ରୋଗ ଚିକିତ୍ସା । ହେ ମତ୍ତହସ୍ତିଗମନେ ! ହେ କୃଶୋଦରି ! ହେ ପ୍ରିୟେ ! ଅଗ୍ନିମାନ୍ଦ୍ୟ ରୋଗରେ ସିନ୍ଧୁଜା (ସୈନ୍ଧବ ଲବଣ), ଅନଳ ( ଚିତାମୂଳ ), କଣା (ପିପ୍ପଳୀ ତଣ୍ଡୁଳ), ହରିଡ଼ା ଏମାନଙ୍କୁ ଚୂର୍ଣ୍ଣ କରି ପ୍ରାତଃକାଳରେ ସୂର୍ଯ୍ୟ ଓଦନରେ ଜଳ ସହିତ ସେବନ କରିବ । ୧୦ ।

## ପୁନରପ୍ୟାହ ।

ଜଗ୍ଧ ବାମକେକ୍ଷଣେ ! ବଧୂମୁଖଂ ତବାଧଃଶ୍ରସ୍ତଂ
ବଧେହ ଲବଣାର୍ଦ୍ଧକଂ ସପଦ ଭୋଜନାଗ୍ରେଃକ୍ଷୁଧେ ।
ତଡ଼ଙ୍ଗଦହନାମୃତା ତ୍ରିଶଦ ଲେକ ଚୂର୍ଣ୍ଣଂ ସଦା
ଗୁଡ଼େନ ସହ ସର୍ପିଷା ଜ୍ୱଳନଦୀପନଂ ଲେହୟେତ୍ । ୧୧ ।

**ଭାଷାର୍ଥ**—ପୂଜନୀୟ ହେ କମଳେକ୍ଷଣେ ! ତୁମ୍ଭର ଚନ୍ଦ୍ରବଦନକୁ ଫିକାଏ ଉତ୍ତେଜନ କର । ଅଗ୍ନିମାନ୍ଦ୍ୟ ରୋଗରେ ଭୋଜନ କରିବା ପୂର୍ବରୁ ଅଦା ସୈନ୍ଧବ ଲୁଣ ସହିତ ଖାଇବ । ବଡ଼ଙ୍ଗ, ଦହନ (ଚିତାମୂଳ), ଅମୃତା (ଗୁଳୁଚୀ), ବୃଷଦ (ଷ୍ଟଲ୍‌ଆମଞ୍ଜି), ଶୌକ (ଶୁଣ୍ଠୀ) ଏକତ୍ର ଚୂର୍ଣ୍ଣ କରି ପୁରୁଣାଗୁଡ଼ ଓ ଘିଅ ସହିତ ଅର୍ଦ୍ଧତୋଳା ମାତ୍ରାରେ ସେବନ କଲେ ଅଗ୍ନି ଉଦ୍ଦୀପ୍ତ ହୁଏ, ଅର୍ଥାତ୍ କ୍ଷୁଧା ଜାତ ହୁଏ । ୧୧ ।

## ହିଙ୍ଗ୍ୱଷ୍ଟକମାହ ।

ଯବାନୀ ଯବାନୀଯୁଗଳୋଦଧିଜନ୍ମ-ବ୍ୟୋଷରାମଠ-କୃତଃ ସଖି ! ରେଣୁଃ ।
ଭୋଜନସ୍ୟ ହରବାଡ଼ବାନଳସାଦଂ ଗୃହୀତୋଽନଳକୃତଂ ପରିକୃନ୍ତେତ୍ । ୧୨ ।

**ଭାଷାର୍ଥ**—ହିଙ୍ଗ୍ୱଷ୍ଟକ ଚୂର୍ଣ୍ଣ । ହେ ସଖି ! ଯବାନୀ (ଯୁଆଣୀ), ଯବାନୀଯୁଗଳ (ଜୀରା, କଳାଜୀରା), ଉଦଧିଜନ୍ମ (ସୈନ୍ଧବଲଣ) ବ୍ୟୋଷ (ଶୁଣ୍ଠୀ, ପିପ୍ପଳୀ, ମରିଚ), ରାମଠ (ଶୋଧିତହିଙ୍ଗୁ), ଏ ସମସ୍ତ ଏକତ୍ର ଚୂର୍ଣ୍ଣକରି ସୂକ୍ଷ୍ମ ପରିମାଣରେ ଗୁଆଘିଅ ସହିତ ଭୋଜନ ପୂର୍ବରୁ ସେବନ କଲେ ବାୟୁକୃତ ଅଗ୍ନିମାନ୍ଦ୍ୟ ରୋଗ ନାଶ ହୁଏ । ୧୨ ।

## ଅଗ୍ନିମୁଖ ଚୂର୍ଣ୍ଣମାହ ।

ରାମଠୋଽଗ୍ରମଗଧୀ ଭୁବନାନାଂ ଯବାନୀ ପଥ୍ୟ ହୁତଭୁକ୍ ସଗଦାନାଂ ।
ବର୍ଦ୍ଧିତାଂ କମତମ୍ପାନଳହାଦଂ ହନ୍ତି ତନ୍ୱି ! କମୃତେଽଜ ଋଷାଦଃ ।୧୩।

**ଭାଷାର୍ଥ**—ଅଗ୍ନିମୁଖ ଚୂର୍ଣ୍ଣ । ହେ ପ୍ରିୟେ ! ହେ କୃଶାଙ୍ଗି ! ରାମଠ (ହିଙ୍ଗୁ) ଏକକର୍ଷ, ଉଗ୍ର (ବଚ) ଦୁଇକର୍ଷ, ମଗଧୀ (ପିପ୍ପଳୀ) ତିନକର୍ଷ, ଭୁବନ (ଶୁଣ୍ଠୀ) ଚାରିକର୍ଷ, ଯବାନୀ (ବନଯୁଆଣୀ)

ପାଞ୍ଚକର୍ଷ, ପଥ୍ୟ ( ହରିଡ଼ା ) ଛକର୍ଷ, ଦ୍ରୁତଭୁକ୍ ( ଚିତାମୂଳ ) ସାତକର୍ଷ, ସ୍ୱଗନ୍ଧ ( କୁଡ଼ ) ଆଠକର୍ଷ, ଏ ସମସ୍ତଙ୍କୁ ଚୂର୍ଣ୍ଣକରି ସୁକ ମାତ୍ରାରେ ଉଷ୍ଣଜଳ ସହିତ ସେବନ କଲେ ଅଗ୍ନିମାନ୍ଦ୍ୟ ରୋଗ ଦୂରୀଭୂତ ହୁଏ । ହେ କୃଶାଙ୍ଗି ! ଏ ବିଷୟରେ ତୁମ୍ଭର ବିଷାଦ କାହିଁକି ? ୧୩ ।

## ଅଥକୃମୌ ।

ବୀଜଂ ପଲାଶତରୁଜଂ କୃମିଦସ୍ୟ ବୀଜଂ
ପାଞ୍ଚାଳବୀଜମନଳାଗ୍ନିମୁଖଂ କଷାୟଂ ।
ଦେବେଶପୂଜ ବରବଲ୍ଲିଯୁତଂ ବିଧେୟଂ
କାନ୍ତେ ! କୃମୀନ୍ ପରିହରେନ୍ମଧୁମଦ୍ଯୋଗଂ ! ୧୪ ।

**ଭାଷାର୍ଥ**—ଅନନ୍ତର କୃମିରୋଗ ବିଷୟରେ ଚିକିତ୍ସା । ହେ କାନ୍ତେ ! ପଲାଶବୀଜ, କୃମିଦସ୍ୟଂବୀଜ ( ବିଡଙ୍ଗମଞ୍ଜି ), ପାଞ୍ଚାଳବୀଜ ( ପିପ୍ପଳୀବୀଜ), ଅନଳ (ରକ୍ତଚିତାମୂଳ), ଅଗ୍ନିମୁଖ (ଭଲିଆ), କଷାୟ ( ଚବିଉଡା ), ଦେବେଶପୂଜ ( ଇନ୍ଦ୍ରଯବ ), ବରବଲ୍ଲୀ ( କମ୍ବଳେଇ ) ଏମାନଙ୍କୁ ଚୂର୍ଣ୍ଣକରି ମଧୁ ସହିତ ଲେହନ କଲେ କୃମିରୋଗ ନାଶହୁଏ । ୧୪ ।

## ସର୍ଗଂ ପ୍ରଶଂସନ୍ନାହ ।

କାବ୍ୟେ କୌତୁକଷପକେ ବିରଚିତେ ନାରାୟଣେନାଗମତ୍
ସର୍ଗୋଽୟଂ ସୁଗମୋକ୍ତି ପୂରିତତନୁଃ ସଦ୍‌ବୈଦ୍ୟହର୍ଷୋଦୟଃ ।
ଯଂ ଦୃଷ୍ଟ୍ୱା ନିପୁଣା ଭିଷଗ୍ୟକୁଶଳା ବ୍ୟାଖ୍ୟାସୁ ତାର୍କୀୟକାଃ
ଯୁକ୍ତ୍ୟର୍ଥସମନ୍ୱିତାମୃତପଦଶେଷଦ୍‌ଭୈଷଜ୍ୟପାଣିଧୀଃ । ୧୫ ।

**ଭାଷାର୍ଥ**—ସର୍ଗ ପ୍ରଶଂସା । ନାରାୟଣ କବିଙ୍କ ବିରଚିତ ଏହି କୌତୁକ ଷପକ କାବ୍ୟର ତୃତୀୟ ସର୍ଗ ସମାପ୍ତ ହେଲା । ଏହି

ସର୍ଗରେ ଆକାର ସୁବୋଧ ଉକ୍ତିରେ ପରିପୂର୍ଣ୍ଣ, ସଦ୍‌ବୈଦ୍ୟମାନଙ୍କର ଆନନ୍ଦଦାୟକ ଏବଂ ଔଷଧ ଜ୍ଞାନ ବିଷୟରେ ଲୋକମାନଙ୍କର ବୁଦ୍ଧିପ୍ରଦ ହୋଇଅଛି । ପୁନଶ୍ଚ ସୁବୋଧ ଅର୍ଥମାନଙ୍କ ଦ୍ୱାରା ତତ୍ତ୍ୱଜ୍ଞାନର ଉପଦେଷ୍ଟା ହୋଇଅଛି । ଯାହା ଦେଖି ମୂର୍ଖବୈଦ୍ୟମାନେ ଉତ୍ତମ ଔଷଧ-ମାନଙ୍କ ବିତରଣ ବୁଝିବା ବିଷୟରେ ସମର୍ଥ ହେଉଅଛନ୍ତି । ୧୫ ।

ତୃତୀୟ ସର୍ଗ ସମାପ୍ତ ।



## ଚତୁର୍ଥଃ ସର୍ଗଃ ।



### ଅତ୍ର ସର୍ଗେ ପାଣ୍ଡୁରୋଗ ମାରଭ୍ୟ ଅରୁଚି ରୋଗ ପର୍ଯ୍ୟନ୍ତଂ ଚିକିତ୍ସାମାହ ।

ଶୃଣୁ ପ୍ରିୟତମେ ! ବଦାମି ରୁଚିରଂ ହଂସାଳସ୍ୟସୂତାଂ ଭଜ ପ୍ରାତଦିନଂ ।
ନପିବ୍ ସୁରଶ୍ରେୟସଃ ପରିଶ୍ରୁତଂ ମରାଳଗମନେ ! ବିଟାଣ୍ଡୁରବୁଜ ।୧।

**ଭାଷାର୍ଥ**—୪ର୍ଥ ସର୍ଗ । ଏହି ସର୍ଗରେ ପାଣ୍ଡୁରୋଗଠାରୁ ଆରମ୍ଭ କରି ଅରୁଚିରୋଗ ପର୍ଯ୍ୟନ୍ତ ଚିକିତ୍ସା ବିଷୟ କୁହାଯାଇଅଛି ।

ହେ ପ୍ରିୟତମେ ! ହେ ହଂସଗମନେ ! ପାଣ୍ଡୁରୋଗରେ ପ୍ରତିଦିନ ମଣ୍ଡୁ ସହିତ ହରିଡ଼ା ସେବନ କରିବ; ଏବଂ ସୁରଶ୍ରେ (ଲୌହ)ପାକସିଦ୍ଧ ଗୋଦୁଗ୍ଧ ମଧ୍ୟ ପାନ କରିବ । ୧ ।

## ପୁନଃ ପାଣ୍ଡୁକାମଳହଲୀମକ-ହର-କଷାୟ ମାହ ।

ଭୁଣ୍ଡଳୀଚରକନମ୍ବବସତୈଃ ସାଧିତଂ ତ୍ରିଫଳକୈଃ ପରପୀତଂ
ପାଣ୍ଡୁ ମୁଖ୍ୟ-ଗଦହୃନ୍ମଧୁମନ୍ତ୍ରାକ୍ କୋକଳସ୍ୱର ! ଇଦଂ ତନୁତନ୍ବି ! ।୨।

ଭାଷାର୍ଥ—ପୁନଶ୍ଚ ପାଣ୍ଡୁକାମଳହଲୀମକ ରୋଗବିନାଶକ ପାଚନ । ହେ କୃଶାଙ୍ଗି ! ହେ କୋକିଳବଚନେ ! ପାଣ୍ଡୁ-କାମଳହଲୀମକ ରୋଗରେ କୁଣ୍ଡଳୀ ( ଗୁଳୁଚି ), ଚରକ ( ଷେତ ପାଟୋ ଅର୍ଥାତ୍ ଘରଡୋଡ଼ିଆ ), ନିମ୍ବଛେଲି, କଟୁକ ( ଚଟ୍ରଇଡା ), ତ୍ରିଫଳା [ ହରଡ଼ା, ବାହାଡ଼ା, ଅଁଳା ] ଏମାନଙ୍କ ପାଚନରେ ମହୁ ପକାଇ ଦିଇଲେ ରୋଗୀ ଅତଶୀଘ୍ର ସେହି ରୋଗରୁ ମୁକ୍ତ ହୁଏ ।

### ପୁନଃ —

ଦାରୁବହ୍ନିକୁଳକୈଃସକଟୁକା-ଅକ୍ଷ୍ଣ ହୈମବତଶୋଥହରୈଃ ପ୍ରାକ୍ ।
ପାଣ୍ଡୁକାମଳହଲୀମକ ରୋଗେ ପାଚନଂ ରଜନନାଥମୁଖୀଦଂ ।୩।

ଭାଷାର୍ଥ—ଉକ୍ତ ରୋଗରେ ପୁଣି ହେ ଚନ୍ଦ୍ରମୁଖି ! ଦାରୁ (ଦେବଦାରୁ ), ବହ୍ନି (ଶୁଣ୍ଠୀ), କୁଳକ ( ପଟଶାଳପତ୍ର ), କଟୁକ (ଚଟ୍ରଇଡା) ଅରିଷ୍ଟ (ନିମ୍ବଛେଲି), ହୈମବତ ( ହରଡ଼ା ), ଶୋଥହର (ପୁରୁଣୀ) ଏମାନଙ୍କୁ ପାଚନ କରି ମହୁ ସହିତ ପାନ କରିବ ।୩।

### ପୁନଶ୍ଚ—

ପ୍ରିୟଙ୍ଗୁକଲ୍କଂ ଲବଣମିଶ୍ରିତଂ ଚ ପାକସଜ୍ଞାକ୍ତୁ ଚନ୍ଦନଂ ପ୍ରିୟେ !
ଶତାବରୀ ଚନ୍ଦନଲେପନାଦସ୍ତ୍ରଂ ହରେତ୍ ପ୍ରଦେହୋ ହରଣଂ ଗଦଂକ୍ଷଣାତ୍ ॥

ଭାଷାର୍ଥ—ହେ ପ୍ରିୟେ ! ପୁନଶ୍ଚ ଲବଣୀ ମିଶ୍ରିତ ବଟପ୍ରିୟଙ୍ଗୁ, କର୍ପୂର ମିଶ୍ରିତ ଶ୍ୱେତଚନ୍ଦନ, ଏବଂ ଶତାବରୀ ରସରେ ଶ୍ୱେତଚନ୍ଦନ

ଘୋଳ ଦେହରେ ବୋଳହେଲେ ରୋଗୀ ପାଣ୍ଡୁରୋଗରୁ ଶୀଘ୍ର ମୁକ୍ତ ହୁଏ । ୪ ।

## ପୁନଶ୍ଚ---

ପୁନର୍ନବା ଦାରୁ ବଡ଼ଙ୍ଗ ପୁଷ୍କରଂ ତ୍ରିବୃଚ୍ଚ ତ୍ର୍ୟୂଷଣ ବାରିଦା ବରା-
ଷଡୂଷଣଂ ନାକୁଳମୂର୍ତ୍ତିସମ୍ଭବା ବଚରେଚକଂ ବହ୍ନିଯୁଗଂ ସମାନତଃ ।
ଅୟୋମଳଂ ଦ୍ୱିଗୁଣିତଂ ଗବାଂଜଳୈ-ରଷ୍ଟୋଽଷ୍ଟଗୌଣୈଃପରିପାଚିତଂପ୍ରିୟେ!
ବଳାନୁରୂପଂ କମଳେକ୍ଷଣେଽଗଦୋ ଜୟତ୍ୟସୌ ପାଣ୍ଡୁମୁଖାମୟାନ୍‌ବହୂ ।୫।

**ଭାଷାର୍ଥ**—ପୁନଶ୍ଚ ପୁନର୍ନବା (ପୁରୁଣୀ), ଦାରୁ (ଦେବଦାରୁ), ବଡ଼ଙ୍ଗ-ତଣ୍ଡୁଳ, ପୁଷ୍କର, ତ୍ରିରେଚନ୍ନ (ତ୍ରିବୃତ୍=ତହୁଡ), ତ୍ର୍ୟୂଷଣ (ତ୍ରିକଟୁ=ଶୁଣ୍ଠୀ, ପିପ୍ପଳୀ, ମରିଚ), ବାରିଦା (ମୁଥା), ବରା (ତ୍ରିଫଳା=ହରିଡ଼ା, ବାହାଡ଼ା, ଅଁଳା), ଷଡୂଷଣ ( ପିପ୍ପଳୀ, ପିପ୍ପଳୀମୂଳ, ଗୁଈଁଚାଠ, ଚିତାମୂଳ, ଶୁଣ୍ଠୀ, ମରିଚ), ନାକୁଳ-ମୂର୍ତ୍ତିସମ୍ଭବ ( ଇନ୍ଦ୍ରଯବ ), ବିରେଚକ ( ଜୟପାଳ ), ବହ୍ନିଯୁଗ ( ହଳଦୀ, ଦାରୁହଳଦୀ ) ଏ ସମସ୍ତ ସମଭାଗ; ଏମାନଙ୍କ ଦୁଇଗୁଣ ଶୋଧିତ ମଣ୍ଡୁର ଅର୍ଥାତ୍ ଲୌହମଳକୁ ଆଠଗୁଣ ଗୋମୂତ୍ରଦ୍ୱାରା ପନକପାତ୍ରରେ ସିଦ୍ଧ କରିବ । ବଳାନୁସାରେ ଭକ୍ଷଣ କଲେ ହେ କମଳେକ୍ଷଣେ! ହେ ପ୍ରିୟେ ! ପାଣ୍ଡୁପ୍ରଭୃତି ରୋଗମାନ ଆଶ୍ଚର୍ଯ୍ୟରୂପରେ ବିନଷ୍ଟ ହୁଏ । ୫ ।

## ଅଥ ରକ୍ତପିତ୍ତ ପ୍ରତିକାର ମାହ ।

ପିତ୍ତାଽସୃକ୍ କ୍ଷତକାଶାନାଂ କ୍ରିୟଙ୍କାଣାଂ ଯଥା କୃତଃ ।
ବଧୂଲକ୍ଷ୍ମାଧିପମୂତେଽସାଧିତାଽବଗତେ ପ୍ରିୟେ! । ୬ ।

**ଭାଷାର୍ଥ**—ଅନନ୍ତର ରକ୍ତପିତ୍ତ ରୋଗ ଚକିତ୍ସା କହୁଅଛୁ । ହେ ପ୍ରିୟେ ! ଯେପରି ସିଂହମୁଖ ବୋଲି ଜଣାପଡଲେ ମୃଗମାନଙ୍କର ଅସାଧ୍ୟତା ରହେନାହିଁ, ଅର୍ଥାତ୍ ସିଂହଦେଖି ପଶୁମାନେ ଯେପରି ସାଧ୍ୟ ହୁଅନ୍ତି, ସେହିପରି ବାସଙ୍ଗ ବୃକ୍ଷ ଜଣାପଡଲେ ରକ୍ତପିତ୍ତ କ୍ଷୟକାଶର ଅସାଧ୍ୟତା ରହି ନ ପାରେ, ଅର୍ଥାତ୍ ବାସଙ୍ଗ ବୃକ୍ଷଥିଲେ ରକ୍ତପିତ୍ତାଦି ରୋଗୀମାନଙ୍କର ଦୁଃଖ କଣ ? । ୬ ।

## ବାସାବଲେହ ମାହ ।

ତାସାହ୍ୱାଃ ସ୍ୱରସୋଃଙ୍କ ବେଦ କୁଡ଼ବୋ ଦତ୍ତ୍ୱାହିତାଂ ଶର୍କରାଂ
ଚନ୍ଦ୍ୱ୍ୟଷ୍ଟେ ପଳକାଂ କଣାଂ ଦ୍ୱି ପଳକାଂ ଚକ୍ଷୁଃପଳଂ ସର୍ପିଷଃ ।
ଲେହ୍ୟରୂଂ ଚ ଗତେଃନ ପୂଷ୍ପରସତଃ ଦ୍ୱଷ୍ଟୌ ପଳାନ୍ୟାଦଦେ
ବାସାଖ୍ୟୋ ହ୍ୟବଲେହସ୍ୟେଷ୍ଟ ଲଳନେ ! ପିତ୍ତାସ୍ରଜଂ ନାଶୟେତ୍ ।୭।

**ଭାଷାର୍ଥ**—ହେ ଲଳନେ ! ଏହି ବାସାବଲେହ ରକ୍ତପିତ୍ତରୋଗ-ବିନାଶ ଅଟେ । ଏହାର ବିଧାନ କହୁଅଛୁଁ, ଶୁଣ । ବାସା (ବାସଙ୍ଗପତ୍ର)-ରସ ୧ପ୍ରସ୍ଥ ଅର୍ଥାତ୍ ଦୁଇ ସେର), ଶର୍କରା (ଚିନି) ଆଠପଳ= ୬୪ତୋଳା, ଏ ଦୁହିଁକୁ ଏକତ୍ର ମୃଦୁ ଅଗ୍ନିରେ ପାକ କରନ୍ତୁ ଘନୀଭୂତ ହେଲେ ଘୃତ ୧୬ ତୋଳା ଓ ପିପ୍ପଳୀଚୂର୍ଣ୍ଣ ୧୬ ତୋଳା ମିଶାଇ ଚଟୁରେ ଉତ୍ତମରୂପେ ଘାଣ୍ଟିବ । ତପ୍ତରେ ମଧୁ ୮ପଳ= ୬୪ତୋଳା ମିଶ୍ରିତ କରି ସୁରଅଣା ଅର୍ଥାତ୍ ଦୁଇମସା ଓଜନର ଗୁଡା କରି ସେବନ କଲେ ରକ୍ତପିତ୍ତରୋଗ ବିନଷ୍ଟ ହୁଏ । ୭ ।

ଲଳନେ ! ମଧୁନାଃଧୂନା ଶିବା ଶୁଣୁ ମାସୂଃକ୍ଷତଜାପକୂତ୍ୟେ ।
କୂଷକା କୁଷଳେ ! ସୁକୁନ୍ତଳେ ! କମୂ ମାନଃ ପ୍ରମଦାପଡୂତ୍ୟେ । ୮ ।

**ଭାଷାଥ** । ହେ ଲଳନେ ! ହେ ସୁକୁନ୍ତଳେ ! ହେ କୁଶଳେ ! ତର୍ଜ୍ୟୈ । ୬ ଶୁଣ । ମଧୁ ସହିତ ଶିବା(ହରଡ଼ା)ଚୂର୍ଣ୍ଣ ଅର୍ଦ୍ଧତୋଳା ମାତ୍ରାରେ ସେବନ

କଲେ ରକ୍ତପିତ୍ତ ରୋଗ ଧ୍ୱଂସପ୍ରାପ୍ତ ହୁଏ । ହେ ପ୍ରିୟେ ! ତୁମ୍ଭେ କାହିଁକି ମୋର ଆନନ୍ଦଭଙ୍ଗ ସକାଶେ ମାନକରି ବସିଅଛ ? ।୮।

ଅଗଦଂକାରଜନନୀ ମାସ୍ତୁ ରକ୍ତାପହାରଣୀ ।
ମଧୂଶର୍କରତା କାନ୍ତେ ! ତାମ୍ରୂନଦଘଟସ୍ତନ ! । ୯ ।

**ଭାଷାର୍ଥ**—ହେ ସ୍ୱର୍ଣ୍ଣଘଟସ୍ତନ ! କାନ୍ତେ ! ଅଗଦଂକାରଜନନୀ (ବାସଙ୍ଗ) ପଞ୍ଚ ରସ ତୁଇ ତୋଳା, ମହୁ ଦୁଇମସା, ଚିନି ଦୁଇମସା ଏକତ୍ରିତ କରି ସେବନ କଲେ ରକ୍ତପିତ୍ତରୋଗ ଦୂରୀଭୂତ ହୁଏ । ୯ ।

## ଅଥ ଯକ୍ଷ୍ମଣଃ ।

ସକୃତ୍ପ୍ରଜାଜାନୂରଜୋ ନନ୍ଦନ୍ୟାତ୍ର କ୍ଷୀରପ୍ଳୁତଂ ସକଗଦଂ କୃଶାଙ୍ଗି !
ସାଙ୍ଗେରୁକାମୂଳରଜୋଽପିସର୍ପି-ର୍ମଧୂପ୍ଳୁତଂ ସର୍ବବିନାଶନାଶଂ ।୧୦।

**ଭାଷାର୍ଥ**—ଅନନ୍ତର ଯକ୍ଷ୍ମାରୋଗସମ୍ବନ୍ଧରେ ଚକିତ୍ସା । ହେକୃଶାଙ୍ଗି କାକଜଂଘାମୂଳ (କାଇଞ) ଚୂର୍ଣ୍ଣ ଅର୍ଦ୍ଧତୋଳା ଦୁଗ୍ଧ ଅନୁପାନରେ ସେବନ କଲେ ଯକ୍ଷ୍ମାରୋଗକୁ ବିନାଶକରେ । ନ୍ୟଗ୍ରୋଧକୀ ( ବାଡ଼ିଅଁଳା ) ଚୂର୍ଣ୍ଣ ଅର୍ଦ୍ଧତୋଳା ମହୁ ଓ ଘୃତ ସହିତ ସେବନକଲେ ମଧ୍ୟ ଉକ୍ତ ରୋଗ ଦୂରୀଭୂତ ହୁଏ । ୧୧ ।

ମାଗଧୀଗୋସ୍ତନୀଶର୍କରାଚୂର୍ଣ୍ଣିତଂ କ୍ଷୌଦ୍ରସର୍ପିଃପ୍ଳୁତଂ ବାର୍ଦ୍ଧକାବର୍ଜ୍ଜକଂ ।
ରାଜରୋଗାପହଂ କାନ୍ତିଦଂ ପୁଷ୍ଟିଦଂ କାଶହଂ ଶ୍ୱାସକୋଚ୍ଛେଦନଂ ସୁନ୍ଦର !୧୨।

**ଭାଷାର୍ଥ**—ହେ ସୁନ୍ଦରି ! ମାଗଧୀ (ପିପ୍ପଳୀ), ଗୋସ୍ତନୀ (ଦ୍ରାକ୍ଷା) ପ୍ରତ୍ୟେକ ଅର୍ଦ୍ଧତୋଳା, ଚିନି ଅର୍ଦ୍ଧତୋଳା ଏକତ୍ର ଘିଅ ଓ ମହୁ ସହିତ ସେବନ କଲେ ଯକ୍ଷ୍ମାରୋଗର ବିଧ୍ୱଂସ ହୁଏ । ଏବଂ ବୃଦ୍ଧ ଲୋକର ବାର୍ଦ୍ଧକ୍ୟାବସ୍ଥା ଦୂର ହୁଏ । ଆଉ ମଧ୍ୟ ଏହି ଔଷଧ ଶରୀରର କାନ୍ତି ବୃଦ୍ଧି କରେ ଏବଂ ଶ୍ୱାସ କାଶକୁ ନଷ୍ଟ କରେ ।୧୨।

ପାଞ୍ଚାଳକା ଗୀଢ ଗଣ୍ଡା ଶର୍କରାଚୂର୍ଣ୍ଣ ମାଲପନ୍ ।
ମଧୁସର୍ପିର୍ଯୁତଂ କାନ୍ତେ ! କ୍ଷୟୋଽପିକ୍ଷୟମାପ୍ନୁୟାତ୍ । ୧୩ ।

**ଭାଷାର୍ଥ**—ହେକାନ୍ତେ ! ପିପ୍ପଳୀ ଅର୍ଦ୍ଧତୋଳା, ଅଶ୍ୱଗନ୍ଧା ଅର୍ଦ୍ଧତୋଳା, ଚିନି ଅର୍ଦ୍ଧତୋଳା ଏକତ୍ର ମଧୁସହିତ ଗୋଳି ସେବନ କଲେ ଯକ୍ଷ୍ମା ଓ ଉରଃକ୍ଷତରୋଗୀ ଆରୋଗ୍ୟ ଲାଭକରେ । ୧୩ ।

## ଅଥ କ୍ଷତକ୍ଷୟେ ନାର୍ଗୁଣ୍ଡୀ ଘୃତମାହ ।

ସହ କଣ୍ଟକସୃଷ୍ଟାନା ନାକନାଥସ୍ୟ ନାସ୍ତ୍ୟା
ଘୃତବଧପରିପିଷ୍ଟା ନାକପତ୍ନୀପ୍ରକାଶେ !
ଗଦନରପତହନ୍ତ୍ରୀ ନାକନାଂ ରୂପଦାତ୍ରୀ
ପିକନନଦବଧାଜି ! ବସ୍ତ୍ରଭୁକ୍ ଯାଣକର୍ତ୍ତ୍ରୀ । ୧୪ ।

**ଭାଷାଥ**—ଅନନ୍ତର କ୍ଷତକ୍ଷୟରୋଗରେ ନାର୍ଗୁଣ୍ଡୀଘୃତ ବିଷୟ କହୁଅଛୁ । ହେକୋକିଳ ବଚନେ ! ହେଶଚୀରୂପେ ! ପତ୍ରପୁଷ୍ପଫଳସହିତ ବେଗୁନିଆ ଗଛ ଆଣି ଏକତ୍ର ଛେଚି, ତହିଁରୁ ରସ ଗ୍ୟାରସେର ବାହାର କରିବ । ଗୁଆଘିଅ ଗ୍ୟାରସେର ଯଥାବିଧିରେ ଶୋଧନ କରି ଉକ୍ତ ଘୃତ ଓ ରସ ଏକତ୍ର ପାକ କରିବ । ଘୃତାବଶେଷ ରଖି ଅର୍ଥାତ୍ ୪ସେର ମାତ୍ରରଖି ତହିଁରେ ବେଗୁନିଆର ପତ୍ରାଦି ସମଗ୍ର ଅଂଶ ଏକସେର ବାଟି କଳ୍କ ଦେଇ ପାକ କରିବ । ଘୃତକୁ ଛାଣି ରଖିବ । ଏହିଘୃତ ସକାଳ ସନ୍ଧ୍ୟାରେ ଅର୍ଦ୍ଧତୋଳା ମାତ୍ରାରେ ସେବନ କଲେ ଯକ୍ଷ୍ମା ଏବଂ ଉରଃକ୍ଷତ ରୋଗ ବିଦୂରିତ ହୁଏ । ୧୪ ।

ବାଟ୍ୟାଳକଂ ହସ୍ତିବଳା ବଳଭଦ୍ରାନୁନାପତଃ !
ଏତୈର୍ଯୁତମ୍ମୁରୋରୋଗଂ ପାଦକ୍ଳୀତକ୍ୱକଲ୍କୁତଂ । ୧୫ ।

**ଭାଷାର୍ଥ**—ବାଡ଼ିଅଁଳା, ବନ୍ତ୍ରମୂଳୀ, ଅର୍କ୍ଫୁନଚ୍ଛେଲ ଏମାନଙ୍କ କ୍ୱାଥରେ ଘୃତ ସିଦ୍ଧ କରି ଘୃତର ଚତୁର୍ଥଭାଗରୁ ଏକଭାଗ ଯଷ୍ଟିମଧୁ କଲ୍କଦେଇ ଘୃତକୁ ପାକ କରିବ । ଏହି ଘୃତ ସେବନ କଲେ ଉରଃକ୍ଷତରୋଗ ନିଃଶେଷ ହୁଏ । ୧୫ ।

## ପଞ୍ଚକାଶହରଂ ଚାତୁର୍ଜାତକମାହ ।

ଚାତୁର୍ଜାତଂ ତ୍ରିକଟୁ ଚବିକା ଗ୍ରନ୍ଥିକଂ ବାଂଶିକାଶ୍ରୀ—
ର୍ଦୀପ୍ୟଂ ଜାତଫଳମିତି କୃତଂ ଶ୍ଳକ୍ଷ୍ଣଚୂର୍ଣ୍ଣଂ ଗୁଡ଼େନ ।
ପିଣ୍ଡଂ କୃତ୍ୱା କମଳଲପତ୍ରେ ! ପଞ୍ଚକାସେଷୁ ଦଦ୍ୟାତ୍
କ୍ଷୌଦ୍ରେଣାକ୍ତଂ ପୃଥୁଳଜଘନେ ! ଦ୍ୱୈଗୁଣେନୈବ ତେଷାଂ ।୧୬।

**ଭାଷାର୍ଥ**—ପଞ୍ଚବିଧ କାଶନାଶକ ଚାତୁର୍ଜାତକ ଚୂର୍ଣ୍ଣ । ହେ ପଦ୍ମମୁଖି ! ହେ ପୃଥୁଳଜଘନେ ! ଚାତୁର୍ଜାତକ ( ତେଜପତ୍ର ଏଳାଇଚ, ନାଗେଶ୍ୱର, ଗୁଡ଼ତ୍ୱକ୍ ), ତ୍ରିକଟୁ ( ଶୁଣ୍ଠୀ, ପିପ୍ପଳୀ, ମରିଚ ), ଚବିକା ( ଗୁଳଞ୍ଚିକାଠ ), ଗ୍ରନ୍ଥୀକ , ( ପିପ୍ପଳୀମୂଳ ), ବଂଶିକା ( ବଂଶଲୋଚନା ), ଶ୍ରୀ ( ଲବଙ୍ଗ ), ଦୀପ୍ୟ ( କଳାଜୀରା ), ଜାଇଫଳ ଏମାନଙ୍କୁ ସମାନ ଭାଗରେ ଚୂର୍ଣ୍ଣ କରି ଏହାର ଦୁଇଗୁଣ ପୁରୁଣା ଗୁଡ଼ ଦେଇ ଅର୍ଦ୍ଧତୋଳା ମାତ୍ରାରେ ଗୁଡ଼ିକା ବାନ୍ଧିବ । ପରେ ମହୁ ଦ୍ୱାରା ଆଲୋଡ଼ନ କରି ସେବନ କଲେ ପଞ୍ଚପ୍ରକାର କାଶ (ଅର୍ଥାତ୍ ବାୟୁପିତ୍ତ କଫ-କ୍ଷତକ୍ଷୟଜନିତ ) ରୋଗ ନଷ୍ଟ ହୁଏ ।

## ପଞ୍ଚକାଶହର ନାଗରାଦି ମୋଦକମାହ ।

ନାଗରୁଂଶଣ ମାଗଧୀ ଗିରିଶ ଯୋଷିତାଂ ସୁପ୍ରିୟେ !
କର୍ଷେତ ସହଷା ଷସ୍ୟଂ କମଳଲୋଚନେ ! ମାଧୁରି ।

ଗୃଣ୍ଠୀ ପତ୍ରନଷେବତା କଣନଚଫକାସେଚସ୍ୱୋ—
ଙ୍ଗାସ ବକୁଡେଃ ସୁଧା ମଧୁର ଷ୍ୱରଗ ସ୍ୱରୁବ ! । ୧୭ ।

**ଭାଷାର୍ଥ**—ପଞ୍ଚବିଧ କାଶହର ନାଗରାଦ ମୋଦକ ।
ହେ କମଳଲୋଚନେ ! ହେ ଅମୃତମୟବାକ୍ୟରୁଚ ! ହେ ପ୍ରିୟେ ! ଜଗତ ( ଶୁଣ୍ଠୀ ), ଉଷଣ [ ମରିଚ ], ମାଗଧୀ ( ପିପ୍ପଳୀ ), ଗିରଣଯୋଷିତ୍ ( ହରଡ଼ା ), ଏମାନଙ୍କୁ ସମଭାଗରେ ଚୂର୍ଣ୍ଣ କରି ମହୁ ସହିତ ଅର୍ଦ୍ଧତୋଳାମାତ୍ରାରେ ଗୁଟିକା କରିବ । ଏହି ଗୁଟିକା ସେବନରେ ପଞ୍ଚବିଧ ଅର୍ଥାତ୍ ବାତପିତ୍ତକଫ କ୍ଷତକ୍ଷୟ ଜନିତ କାସରୋଗ, ଅରୁଚ ଏବଂ କଫନିକାର ପ୍ରଭୃତିରୋଗ ଶମ୍ପ୍ରାପ୍ତ ହୁଏ । ୧୭ ।

## ହିକ୍କାୟାଂ

ମହାଘୋଷା ଭର୍ଗୀ ନନୁ ବୃହତିକେ ପୁଷ୍କରଜଟା
ହିକତ୍ରୟଂ କାନ୍ତେ । ଲବଣ ନବକଂ କୋଷ୍ଣପୟସା
କୃତଃ ଯୋଦୋଽଦ୍ୟେପୈଃ କମଳଲୟନେ ! ସୁରୁଚକୁଚେ ଘୋ
ଦହେଦ୍ଧିକ୍କାରୋଗଂ ଶିଶିରସମୟଃ ପଙ୍କଜମିବ । ୧୮।

**ଭାଷାର୍ଥ**—ହିକ୍କାରୋଗ ଚିକିତ୍ସା । ହେ ପଙ୍କଜମୁଖି ! ହେ ସୁକେଶି ! ହେ କାନ୍ତେ ! ମହାଘୋଷା (କକଡ଼ାଶୃଙ୍ଗୀ), ଭର୍ଗୀ ( ବ୍ରହ୍ମଣଯାଷ୍ଟିଆ ମୂଳ),ବୃହତକେ (ଅଙ୍କରାନ୍ତି, ଲଣ୍ଡାବେଙ୍କୋଳି),ପୁଷ୍କର [କୁଡ଼], ଜଟା [ ଜଟାମାଂସୀ ], ହିକତ୍ରୟ ( ଶୁଣ୍ଠୀ, ପିପ୍ପଳୀ, ମରିଚ ହରିଡ଼ା, ବାହଡ଼ା, ଅଁଳା ), ଲବଣନବକ ( ସୈନ୍ଧବ, ସାମୁଦ୍ର ବିଟ, ସଚଳ, କର୍ଚ୍ଚଟ ) ଏମାନଙ୍କ ଚୂର୍ଣ୍ଣ ଦୁଇମସା ମାତ୍ରାରେ ଇଷଦୁଷ୍ଣ ଜଳରେ ପାନକଲେ ଶୀତସମୟ ପଦ୍ମବନକୁ ପୋଡ଼ି ପକାଇଲା ପରି ହିକ୍କା ରୋଗକୁ ବିନଷ୍ଟ କରେ । ୧୮ ।

## ଅଥ ହିକ୍କାହରପ୍ରୟୋଗମାହ ।

କ୍ଷପାହୈମାସୃଷ୍ଟା ମଗଧତନୟା କୋଳକଣ୍ଟକୈଃ
ସହଦ୍ରାକ୍ଷାରେଣୁର୍ବିହିତ ତଇଳଟେଳେନ ମିଳିତଃ ।
ହିମୋ ମାସେ ବ୍ରୀଡ଼ାଂ କୁସୁମସମୟେ ଶାସନବଧ୍ୱଂ
ହବା ତନ୍ୱଙ୍ଗି ! ଦ୍ରାକ୍ ରଜନତମିରଂ ଶ୍ୱାସ ଇବ । ୧୯ ।

ଭାଷାର୍ଥ—ଅନନ୍ତର ହିକ୍କା ରୋଗନାଶକ ଔଷଧ କହୁଅଛନ୍ତି । ହେ-କୃଶାଙ୍ଗି ! କ୍ଷପା ( ଦାରୁହଳଦୀ ), ହୈମା [ ଗନ୍ଧଶୁଣ୍ଠୀ ] ସୃଷ୍ଟା, ମଗଧତନୟା ( ପିପ୍ପଳୀ ), କୋଳକ ( ବରକୋଳିମଞ୍ଜି ), ପୁରୁଣାଗୁଡ଼, ଦ୍ରାକ୍ଷା, ଏମାନଙ୍କୁ ଏକତ୍ର ଚୂର୍ଣ୍ଣ କରି ଦୁଇମାସ ମାତ୍ରାରେ ତଇଳଟେଳ ସହିତ ସେବନ କଲେ ତାହା ସର୍ବ ପ୍ରକାର ଶ୍ୱାସ ରୋଗକୁ ଧ୍ୱଂସ କରେ । ହେ ତନ୍ୱଙ୍ଗି ! ଯେପରି ବସନ୍ତ କାଳରେ କନ୍ଦର୍ପ ଲଜ୍ଜାକୁ, ହିମକାଳ ଦିବସକୁ, ଏବଂ ସୂର୍ଯ୍ୟଦେବ ଅନ୍ଧକାରକୁ ବିନାଶ କରନ୍ତି । ୧୯ ।

## ସ୍ୱରଭେଦପ୍ରୟୋଗମାହ ।

ଚବ୍ୟାମ୍ଳବେତସ କଟୂତ୍ରୟ ତନ୍ତ୍ରିଡୀକଂ
ତାଳୀଶଜୀରକତୁଗାଦହନୈ ର୍ବିଜୋଽହ୍ୟଃ ।
ତ୍ରୈଗନ୍ଧ୍ୟଜୀର୍ଣ୍ଣଗୁଡ଼ତୁଲ୍ୟମସ୍ୟ ଫଳଗଂ
ବର୍ଷାସୁ ବଦ୍ଧରତ ବସ୍ୱର ରୋଗମୁକ୍ତ । ୨୦ ।

ଭଷାର୍ଥ—ସ୍ୱରଭେଦ ରୋଗରେ ଔଷଧ । ହେ କାନ୍ତେ ! ଚବ୍ୟ [ ଚୁଇଁକାଠ ], ଅମ୍ଳବେତସ, କଟୁତ୍ରୟ ( ଶୁଣ୍ଠୀ, ପିପ୍ପଳୀ, ମରିଚ ) ତେନ୍ତୁଳିମଞ୍ଜି, ତାଳୀଶପତ୍ର, ଜୀର, ତୁଗା [ ବାଉଁଶ ], ଦହନ ( ଚିତାମୂଳ ), ତ୍ରୈଗନ୍ଧ ( ତେଜପତ୍ର, ଗୁଡ଼ତ୍ୱକ୍, ଏଲାଇଚ ), ପୁରୁଣାଗୁଡ଼ ଏ ସମସ୍ତଙ୍କୁ ଏକତ୍ର ଚୂର୍ଣ୍ଣ କରି

ଦୁଇମସା ମାଷାରେ ସେବନ କଲେ ବର୍ଷା ଧୂଳିପଟଳ ନାଶ
କଲପରି ସ୍ୱରଭେଦ ରୋଗକୁ ବିନାଶ କରଇ । ୧୦ ।

## ଅଥାରୋଚକହର ଶୁଣ୍ଠୀକଷାୟମାହ ।

ବନ୍ଦ୍ୱେ ବର୍ଣ୍ଣବରେ ବର୍ଣ୍ଣମୁଖେଽରୋଚକ ରୋଗଦଃ
ନୋସ୍ୟାତୁ ସରେଭୂହକୃଶେ ! କାନ୍ତେ ! ରୋଚକରୋଗଦଃ ।୧୧।

ଭାଷାର୍ଥ—ଅନନ୍ତର ଅରୋଚକ ରୋଗ ନାଶକ ଶୁଣ୍ଠୀକଷାୟ ।
ହେ ପଦ୍ମଲୋଚନେ ! ହେ ବର୍ଣ୍ଣଶ୍ରେଷ୍ଠେ ! ହେ କାନ୍ତେ ! ଏ
ସଂସାରରେ ଶୁଣ୍ଠୀ ବ୍ୟତୀତ ଅରୋଚକ ରୋଗ ନାଶକ
ଭୁଟକର ଔଷଧ ଆଉ ନାହିଁ । ୧୧ ।

## ପୁନର୍ଭଙ୍ଗ୍ୟନ୍ତରେଣାହ ।

ବଟ୍‌କ୍ଷୌଦ୍ରଯୁକ୍ତୋଽମ୍ଳବେରୋଽପି କାନ୍ତେ !
ତ୍ୱଦନ୍ତପଙ୍କ୍ତେରୁଚିତାଂ ହମର୍ଥଃ ।
ଦାତୁଂ କ୍ଷମନ୍ୟୈରୁପମାନଶବ୍ଦୈଃ
ପଙ୍କ୍ତେରୁହାଣ୍ୟେବ ଦୃଶୋଃ ସମତ୍ୱଂ । ୧୨ ।

ଭାଷାର୍ଥ—ପୁନଶ୍ଚ ଭଙ୍ଗ୍ୟନ୍ତରରେ ଉକ୍ତ ଅରୋଚକ ରୋଗ ବିଷୟରେ
କହୁଅଛି । ହେ କାନ୍ତେ ! ଅମ୍ଳବେର ( ଡ଼ାଳିମ୍ବ ବୀଜରସ ),
ବଟ୍‌ଲବଣ, ମହୁ ମିଶ୍ରିତ କରି ସେବନ କଲେ ଅରୁଚରୋଗ
ନାଶ ହୁଏ । ହେ ପ୍ରିୟେ ! ତୁମ୍ଭର ଦନ୍ତପଂକ୍ତିର ଶୋଭା
ପ୍ରକାଶ କରିବାକୁ ଡ଼ାଳିମ୍ବମଞ୍ଜି ଏକମାତ୍ର ସମର୍ଥ । ପଦ୍ମ ତୁମ୍ଭ
ଚକ୍ଷୁଯୁଗଳରେ ସମତା ବ୍ୟଞ୍ଜକ ହୋଇଅଛି, ଅନ୍ୟ ଉପମା
ଦେବାର କି ପ୍ରୟୋଜନ ? । ୧୨ ।

## ସର୍ଗ ପ୍ରଶଂସନ୍ନାହ ।

କାବ୍ୟେ କୌତୁକଦାପକେ ବରଚଡେ ନାରାୟଣନାଗମତ୍
ସର୍ଗୋଽୟଂ ଭିଷଜୋଽବଧାସ୍ୟ କୁଶଳଂ ବ୍ୟାଖ୍ୟାସ୍ୟ ଗ୍ଠୁର୍ଥିକଃ ।
ତଂ ଦୃଷ୍ଟ୍ୱା ନିପୁଣା ଭଜନ୍ତ ସହସା ସଦ୍‌ବୈଦ୍ୟଯୋଗୋକ୍ତିଷ୍ୱକ୍
ସିଦ୍ଧିଂ ଲୋକସୁଦୁସ୍ତରାଂ ସୁହୃଦସ୍ୟାତ୍ମାନନ୍ଦକନ୍ଦପ୍ରଦଃ । ୨୩ ।

**ଭାଷାଥ**—ଏଠାରେ ସର୍ଗ ପ୍ରଶଂସା କରି କହୁଅଛନ୍ତି । ନାରାୟଣ କବିଙ୍କ ବିରଚିତ ଏହି କୌତୁକ ଦୀପକ କାବ୍ୟର ଚତୁର୍ଥ ସର୍ଗ ସମାପ୍ତ ହେଲା । ଏହା ମିତ୍ରଜନଙ୍କର ଓ ନିଜର ଆନନ୍ଦପ୍ରଦ ହୋଇଅଛି । ନିପୁଣ ବୈଦ୍ୟମାନେ ଏହି ସର୍ଗର ଉତ୍ତମ ବ୍ୟାଖ୍ୟା ଅବଧାରଣ କରି ଲୋକ ଦୁସ୍ତର ସିଦ୍ଧି ଲାଭ କରୁଅଛନ୍ତି । ୨୩ ।

ଚତୁର୍ଥ ସର୍ଗ ସମାପ୍ତ ।

---

## ପଞ୍ଚମଃ ସର୍ଗଃ ।



### ଅସ୍ମିନ୍ ସର୍ଗେ ଛର୍ଦ୍ଦ୍ୟାଦି ଗୁଲ୍ମରୋଗ ପର୍ଯ୍ୟନ୍ତଂ ଚିକିତ୍ସିତ ମାହ ।

ଅଥ ମୃଗେନ୍ଦ୍ରକଟି ! ଶ୍ରବଣଂ କୁରୁ ପ୍ରିୟତମେ । ବୁଶବଦତମଂହରେତ୍ ।
ଉପଣ ମାଗଧିକାକ୍ଷତ ଯଷ୍ଟିକା-ଚନ୍ଦନ କୃତୋ ମଧୁନା ବମିରୁକ୍ ଚୟଂ । ୧ ।

**ଭାଷାର୍ଥ**—ଏହି ପଞ୍ଚମସର୍ଗରେ ଛର୍ଦ୍ଦିରୋଗଠାରୁ ଗୁଲ୍ମରୋଗ ପର୍ଯ୍ୟନ୍ତ ଚିକିତ୍ସା କହୁଅଛନ୍ତି । ହେ ସିଂହକଟି ! ଅଠ-

ମନୋହର ବଚନ ଶୁଣ । ଊଷଣ ( ମରିଚ ), ମାଗଧିକା-
( ପିପ୍ପଳୀ ଚୂର୍ଣ୍ଣ ), ଅକ୍ଷତ ( ଲିଆ ), ଯଷ୍ଟିମଧୁ, ଅତନ
( କଇଥ ) ଏମାନଙ୍କର ଚୂର୍ଣ୍ଣ ଯୁକ ଓଜନ ମଧୁସହିତ ସେବନ
କଲେ ଯାବତୀୟ ବମନ ରୋଗ ନାଶ ହୁଅଇ । ୧ ।

## ପୁନରପ୍ୟାହ ।

ଅଥ ଗିରୀଶବଧୂକଟୁକଫିକୈର୍ଜରଣଧାନ୍ୟକୃତୋମଧୁମାଧୁରୀଃ ।
ଅଥ ଗିରୀଶବଧୂ ଶଶିବଲ୍ଲୀ ମରିଚ ମାଗଧିକୈର୍ମଧୁମାଧୁରୀଃ । ୨ ।

ଭାଷାର୍ଥ—ପୁନଶ୍ଚ । ହେ କାନ୍ତେ ଗିରୀଶବଧୂ ( ହରିଡ଼ା ) କଟୁକଫିକ
( ଶୁଣ୍ଠୀ, ପିପ୍ଳୀ, ମରିଚ ), ଜରଣ ( ଜୀର ), ଧାନ୍ୟ
(ଧନିଆ) ଏମାନଙ୍କର ଚୂର୍ଣ୍ଣ, ଏବଂ ଗିରିଶବଧୂ ( ହରିଡ଼ା ),
ଶଶିବଲ୍ଲୀ ( ଗୁଳୁଚୀ ), ମରିଚ, ମାଗଧିକା ( ପିପ୍ପଳୀଚୂର୍ଣ୍ଣ )
ଏମାନଙ୍କ ଚୂର୍ଣ୍ଣକୁ ଅର୍ଦ୍ଧ ତୋଳାମାତ୍ରାରେ ମଧୁ ସହିତ ଲେହନ
କଲେ ସର୍ବ ପ୍ରକାର ବାନ୍ତିରୋଗ ନଷ୍ଟ ହୁଏ ।

## ଏଳାଦ୍ୟ ଚୂର୍ଣ୍ଣମାହ ।

ଶ୍ରୀଖଣ୍ଡ ଫେନକ ଫଳୀ କର କେଶରୈଳା-
ପାଞ୍ଚାଳିକା କ୍ଷତଘନା ଜମିତ ପ୍ରସୂନୈଃ ।
ଶ୍ରୀଖଣ୍ଡ ଚର୍ଚିତକଳେବରକାନ୍ତ କାନ୍ତେ !
ବାନ୍ତିଂ ହରେ ସୁକଜକାଂ ମଧୁମତ୍ରୁ ପରାଗଃ । ୩ ।

ଭାଷାର୍ଥ—ବାନ୍ତିହର ଏଳାଦ୍ୟ ଚୂର୍ଣ୍ଣ । ହେ ଚନ୍ଦନଚର୍ଚ୍ଚିତ ରମଣୀୟ
କଳେବରେ ! କାନ୍ତେ ! ଶ୍ରୀଖଣ୍ଡ (ଶ୍ୱେତଚନ୍ଦନ), ଫେନକ
( ବରକୋଳିମଞ୍ଜି ) ଫଳୀ ( ପ୍ରିୟଙ୍ଗୁ ) କରକେଶର
[ ନାଗକେଶର ], ଏଳାଇଚ, ପାଞ୍ଚାଳିକା ( ପିପ୍ପଳୀ ),

ଅକ୍ଷତ ( ଲିଆ ), ଘନ ( ମୁଥା ), ଅନିମିଷପ୍ରସୂନ (ଲବଙ୍ଗ) ଏମାନଙ୍କର ସୂକ୍ଷ୍ମ ଓଜନର ଚୂର୍ଣ୍ଣ, ମଧୁ ସଙ୍ଗେ ଗୁଡ଼ି ଖାଇଲେ ବାତପିତ୍ତ କଫଜନିତ ସକଳ ପ୍ରକାର ବାନ୍ତିରୋଗ ହରଣ କରେ । ୩ ।

## ତୃଷାହର ଗୁଟୀମାହ ।

ବହୁଳପାଦଶିଫାକ୍ଷତମାକ୍ଷିକାମଧୁକଖାଜସରୋରୁହନିର୍ମିତାଂ ।
ଅଧିମୁଖଂ ତୃଷିତେ କମଳେକ୍ଷଣେ ! କୁରୁ ଗୁଟୀଂ ସ୍ମରକେଳିବିଚକ୍ଷଣେ ! ।୪।

**ଭାଷାର୍ଥ**—ତୃଷାହର ଗୁଟିକା ବିଷୟରେ କହୁଅଛୁ । ହେ କମଳେକ୍ଷଣେ ! ହେ କାମକେଳି-ବିଚକ୍ଷଣେ ! ବହୁଳପାଦଶିଫା ( ବର-ଓହଳ ), ଅକ୍ଷତ ( ଲିଆ), ମାକ୍ଷିକ (ମହୁ), ଆମଧୂ ( ଗୁଡ଼ ), ଖଜସରୋରୁହ (ଖଜକଇଁ), ଏମାନଙ୍କ ଦ୍ୱାରା ପ୍ରସ୍ତୁତ ଗୁଟିକା ମୁଖରେ ଥାକିଲେ ତୃଷା ହରଣ କରେ । ୪ ।

## ମୂର୍ଚ୍ଛାହର ଚୂର୍ଣ୍ଣମାହ ।

ଅଥକ୍ୱସର୍ପପରିଷ୍କୃତଲୋଚନେ ! କୁବଳକେଶରମାଗଧିକାବିଦ୍ଧୈଃ ।
ହିମଜଳୈଃ ପରିପୀତମିଦଂ ରଜୋ, ମଦହରଂ ସରସୀରୁହଲୋଚନେ ! ।୫।

**ଭାଷାର୍ଥ**—ମୂର୍ଚ୍ଛାହର ଚୂର୍ଣ୍ଣ ବିଷୟ କହୁଅଛୁ । ହେ କାମୋଦ୍ଦୀପକ-ଲୋଚନେ ! ହେ ପଦ୍ମାକ୍ଷି ! କୁବଳ (ବରକୋଳିଫଳର ଖଣ୍ଡ), କେଶର (ନାଗକେଶର), ମାଗଧିକା (ପିମ୍ପଳୀତଣ୍ଡୁଳ), ଅବଦ୍ଧ ( ଉଶୀର=ବେଣାଚେର ) ଏମାନଙ୍କ ଦ୍ୱାରା ପ୍ରସ୍ତୁତ ଚୂର୍ଣ୍ଣ ଦୁଇମସା, ଶୀତଳ ଜଳ ସହିତ ପିଇଲେ ମୂର୍ଚ୍ଛାରୋଗ ନଷ୍ଟ ହୁଏ । ୫ ।

## ମହାତ୍ୟୟହରପ୍ରଭୀକାରମାହ ।

ତବ୍ୟସମଂ ସୁକୌଶିକ ଷପ୍ୟୈ ର୍ନାଗରକ୍ଷରଚିତଂ ପେୟପୀତଂ ।
ବାରୁଣୀଜନ୍ମସ୍ଥିତଂ ମଦବକ୍ଷ୍ୟଵ୍ରଦଂସଗମନେ ! ମଦବେଗେ । ୬ ।
ସଦ୍ବୈ୍ୟା ହରେନ୍ମଦ୍ୟ ବକାରମେଷ ଈଷତ୍କଟାକ୍ଷାସ୍ପବୃତକିଲ୍ଲୋକେ !
ପାରୁଷ୍ୟ ଖର୍ଜୂରକ ଦାଡ଼ିମାମ୍ଳ ବୃକ୍ଷାମଳସ୍ୱାଦୁରସୈ ର୍ବିମଚ୍ଛଃ । ୭ ।

**ଭାଷାର୍ଥ**— ମଦାତ୍ୟୟବେଗ ବନାଶକ ଔଷଧ କହୁଅଛୁ । ହେ ମଦବତି ! ହେ ମତ୍ତହଂସଗମନେ ! ତବ୍ୟ (ଗୁଲିକାଠ), ସମଠ (ହିଙ୍ଗୁ), ସୁକୌଶିକ (ଗୁଗୁଳୁ), ଷପ୍ୟ (ଅଜମୋଦା), ନାଗର (ଶୁଣ୍ଠୀ), ଅକ୍ଷ (ବାହାଡ଼ା), ଏମାନଙ୍କ ଚୂର୍ଣ୍ଣ ଦୁଇମସା ମାତ୍ରାରେ ମଦ୍ୟସହିତ ପିଇଲେ ମଦାତ୍ୟୟ ବେଗ ନଷ୍ଟ ହୁଏ । ୬ ।
ପୁନଶ୍ଚ ଈଷତ୍ କଟାକ୍ଷପାତରେ ସମସ୍ତ ଲୋକଙ୍କୁ ବଶୀଭୂତ କରୁଅଛ ହେ ପ୍ରିୟେ ! ପରୁଷ, ଖର୍ଜୁର, ଦାଡ଼ିମ, ଅମ୍ଳ (ତନ୍ତୁଳୀ), ଆମଳ (ଅଁଳା), ସ୍ୱାଦୁ ( ଦ୍ରାକ୍ଷା) ଏମାନଙ୍କର ରସ ଏକତ୍ରିତ କରି ଦୁଇତୋଳା ପରିମାଣରେ ସେବନ କଲେ ଏହି ମଦାତ୍ୟୟ ବେଗ ତତ୍କାଳରେ ଅପଗତ ହୁଏ । ୭ ।

ପତ୍ରିଣୀ ମଳଜ ବାଳକ ହେବେ୍ୟ ର୍ବାହ୍ୟବାହ୍ୟକୁଶଳୋଽଙ୍ଗ ତବାପି ।
ଖଞ୍ଜନଗଞ୍ଜନଦୃଶେ ! ପରଦ୍ଭୂହୋ ଦ୍ରୋଣିଭେଦ ପୟସାଂ ବଦାମି । ୮ ।
ହ୍ରୀବେର ପଦ୍ମକୋଶୀର ଚନ୍ଦନକ୍ଷୋଦବାରଣା ।
ସମ୍ପୂର୍ଣ୍ଣମବଗାହେତ ଦ୍ରୋଣିଂ ବାହ୍ୟାଦ୍ବିତୋ ନରଃ ।

**ଭାଷାର୍ଥ**—ହେ ଖଞ୍ଜନଗଞ୍ଜନାକ୍ଷି ! ପଦ୍ମିଣୀ [ ପଦ୍ମଫୁଲ ], ମଳଜ ( ଚନ୍ଦନ ), ବାଳକ ( କୁରୁବେଲ୍ଲୀ ), ହେବ୍ୟ (ବେଣାଚେର) ଏମାନଙ୍କଦ୍ୱାରା ସୁବାସିତ ଦ୍ରୋଣି (୩୨ସେର) ପରିମିତ ଜଳରେ ଅବଗାହନକଲେ ମଦାତ୍ୟୟବେଗ ଦୂରିତ ହୁଏ । ସେହିପରି ତାଦୃଶ ସ୍ତ୍ରୀଲୋକର ଆଲିଙ୍ଗନ ମଧ୍ୟ ଉକ୍ତ ବେଗକୁ ବିନାଶ କରିଥାଏ ।

## ଉନ୍ମାଦହର ପ୍ରୟୋଗମାହ ।

ହିଙ୍ଗୁ ଉଦକ୍ତ୍ର୍ୟଷଣସର୍ଷପୋଗ୍ରା ଶୈଗ୍ରୁଷବୀଜଂ ଲବଣଂ ଚଥାପି ।
କାରଞ୍ଜବୀଜଂ କଟୁକଂସମେତଂ ଗୋମୂତ୍ର ପିଷ୍ଟାଞ୍ଜନ ମୁନ୍ମାଦାକ୍ଷେ ! । ୯ ।

**ଭାଷାର୍ଥ**—ଉନ୍ମାଦରୋଗନାଶକ ଔଷଧ କହୁଅଛୁ । ହେ ମଦାକ୍ଷି ! ହିଙ୍ଗୁ, ତ୍ର୍ୟଷଣ (ଶୁଣ୍ଠୀ, ପିପ୍ପଳୀ, ମରିଚ), ସର୍ଷପ (ଶ୍ବେତ-ସୋରିଷ), ଉଗ୍ରା (ବଚ), ଶୈଗ୍ରୁଷବୀଜ (ଶିଗ୍ରୁଚମଞ୍ଜି), ଲବଣ (ସାମୁଦ୍ର ଲବଣ), କାରଞ୍ଜବୀଜ (କରଞ୍ଜମଞ୍ଜି), କଟୁକୀ ଏମାନଙ୍କୁ ଗୋମୂତ୍ରରେ ବାଟି ଅଞ୍ଜନ ତିଆରି କରିବ । ଏହା ଉନ୍ମାଦ-ରୋଗରେ ପ୍ରୟୋଗ କଲେ ତାହା ଶୀଘ୍ର ଉପଶାନ୍ତ ହୁଏ । ୯ ।

## ଅପସ୍ମାରେ ଶିଳାଞ୍ଜନମାହ ।

ରସାଞ୍ଜନଂ ମନଃଶିଳଂ ଶକୃତ୍ ପାରାବତସ୍ୟ ଚ ।
ଅଞ୍ଜନଂ ହନ୍ତ୍ୟପସ୍ମାରମୁନ୍ମାଦାଖ୍ୟଂ ଜୟେତ୍ପ୍ରିୟେ ! । ୧୦ ।

**ଭାଷାର୍ଥ**—ଅପସ୍ମାର ରୋଗ ବିଷୟରେ ଶିଳାଞ୍ଜନ ନାମକ ଔଷଧ କହୁ-ଅଛନ୍ତି । ହେ ପ୍ରିୟେ ! ଶୋଧିତ ରସାଞ୍ଜନ, ମନଃଶିଳା, ପାରାଗୁହ ଏମାନଙ୍କୁ ଏକତ୍ର ପେଷଣ କରି, ସେ ଅଞ୍ଜନ ଚକ୍ଷୁରେ ଦେଲେ ଅପସ୍ମାର ଏବଂ ଉନ୍ମାଦ ରୋଗ ଶାନ୍ତ ହୁଏ ।

## ବାତରୋଗ ପ୍ରତିକାର ମାହ ।

ବାଜି ଗନ୍ଧବଳା ଚଣ୍ଡୁ ସସ୍ନା ଦଶାଙ୍ଗୁଳୈଃ ଶୃତଂ ।
ରୁବୁତୈଳ ଘୃତୈର୍ମିଶ୍ରଂ ବାତରୋଗୀ ପିବେତ୍ ପ୍ରିୟେ ! । ୧୧ ।

**ଭାଷାର୍ଥ**—ବାତରୋଗ ଔଷଧ କହୁଅଛୁ । ହେ ପ୍ରିୟେ ! ବାଜିଗନ୍ଧା (ଅଶ୍ବଗନ୍ଧା), ବଳା (ନାଗବଳା), ଚଣ୍ଡୁ (ଶୁଣ୍ଠୀ), ରସ୍ନା,

ତମ୍ବାଗ୍ନୁକ ( ଗବମୂଳ ) ଏମାନଙ୍କୁ ପାଚନ କରି ଜଡ଼ାତେଲ ଓ ଘିଅ ସହିତ ମିଶାଇ ଖାଇଲେ ବାତରୋଗୀର ବାତ ବକାର ଶାନ୍ତ ହୁଏ । ୧୧ ।

## ରସୋନ ପିଣ୍ଡ ମାହ ।

ନିର୍ଗନ୍ଧାର୍ଦ୍ଧୀକୃତଗନ୍ଧାଦ୍ରୁପିଚୁ ମିଳିତଂ ମାସକୈର୍ହିଙ୍ଗୁ—
ବ୍ୟୋଷକ୍ଷାରାଗ୍ନି ପ୍ରସୂତୈର୍ବିରଚିତ ରଜସା ତମ୍ବୁପାଦସ୍ୟ ରେଣ୍ଡା ।
ପ୍ରାତଃ ପୀତ୍ୱା ତଥାନୁରୁବୁକକୃତଜଳଂ ବାତକା ବାତରୋଗାତ୍
ମୁକ୍ତୋ ଦେବବ୍ଧ ମର୍ଦ୍ଦେଷ୍ଟଭଦନଭସ୍ମନେ ! ନାଶ କାର୍ଯ୍ୟା ବିଚାରଃ ।୧୨

**ଭାଷାର୍ଥ**—ବାତରୋଗେ ରସୁନପିଣ୍ଡ । ରସୁଣକୁ ଗନ୍ଧିରେ ଘୋଳଦହିରେ ପକାଇ ତାହା ନିର୍ଗନ୍ଧ କରିବ । ତହିଁରୁ ପିଚୁ ( ଏକକର୍ଷ ) ଆଣି କ୍ଷାର, ହିଙ୍ଗୁ, ବ୍ୟୋଷ ( ତ୍ରିକଟୁ=ଶୁଣ୍ଠୀ, ପିପ୍ପଳୀ, ମରିଚ ), ଅଗ୍ନି ( ବାହ୍ୱାଡ଼ା ), ଅଗ୍ନିପ୍ରସୂତ ( ପଞ୍ଚଲବଣ ) ଏମାନଙ୍କର ପ୍ରତ୍ୟେକରୁ ଏକମଷା ଚୂର୍ଣ୍ଣ ସହିତ ମିଶାଇବ । ପୁନଶ୍ଚ ତମ୍ବୁପାଦ ( ରଙ୍ଗଗଛ ) ମୂଳର ଚୂର୍ଣ୍ଣ ସହ ଜଡ଼ାମୂଳର କ୍ୱାଥ ଅନୁପାନରେ ପ୍ରାତଃ କାଳରେ ସେବନ କଲେ ବାତରୋଗୀ ବାତରୋଗରୁ ମୁକ୍ତ ହୋଇ ଦେବତା ପରି ଶୋଭନୀୟ ହୁଏ । ହେ ପଦ୍ମଲୋଚନେ ! ଏ ବିଷୟରେ ଅନ୍ୟ ବିଚାର କରିବ ନାହିଁ । ୧୨ ।

## ଅଥ ବାତରକ୍ତେ ।

କଟୁପଟୋଲବଶ୍ଵିଜିଫଳାମୃତା ପଦ୍ମରେବତକାସ୍ରମସୌ ପ୍ରିୟେ !
ହରତନାଶମୁ ତୈଂଷ ବିବୃଭଣା କୁରୁକୁଶାଭ୍ରମଟେଡ !ମୂଗଭାଂ ଜଣାଂ ॥

**ଭାଷାର୍ଥ**—ଅନନ୍ତର ବାତରକ୍ତ ରୋଗ ଚିକିତ୍ସା । ହେ ପ୍ରିୟେ ! କଟୁ ( କଟୁକି ), ପଟୋଳପତ୍ର, ବଞ୍ଚ ( ଛରୁଆର ), ତ୍ରିଫଳା

( ହରଡ଼ା, ବାହାଡ଼ା, ଅଁଳା ), ଅମୃତ (ଗୁଳୁଚୀ) ଏମାନଙ୍କର ପାଚନ ପିପ୍ପଳୀ ଚୂର୍ଣ୍ଣ ସହିତ ସେବନ କଲେ ବାତରକ୍ତ ରୋଗକୁ ହରଣ କରେ । ୧୨ ।

## ଅଥୋରୁସ୍ତମ୍ଭେ ।

ବର ପୃଥ୍ୱୀ ଯଵ୍ୟ ତ୍ରିକଟୁ କୁଡ଼ବ ହନ୍ତ୍ର ମଥିଳଂ
ତଥା ବାଙ୍କୀ ମେଥୀ ଜରଣ ପଳକା ଦର୍ପପରିତୈଃ ।
ଅୟେ ! ପିଣ୍ଡଂ କୃତ୍ୱା କମଳଲପନେ ! କୋଷ୍ଣପୟସା
କଦ୍ୟେତୁକର୍ଷଂ ତୈଳୈଃ ଏହ ବଦନସ୍ତୁନ୍ ସକ୍ଥିପଵନଂ । ୧୩ ।

ଭାଷାର୍ଥ—ଅନନ୍ତର ଉରୁସ୍ତମ୍ଭ ରୋଗ ଚିକିତ୍ସା । ହେ କମଳ ଲପନେ ! ବର (ତ୍ରିଫଳା), ପୃଥ୍ୱୀ (କଳାଜୀର), ଯଵ୍ୟ ( ଅଜମୋଦା ), ତ୍ରିକଟୁ ( ଶୁଣ୍ଠୀ, ପିପ୍ପଳୀ, ମରିଚ ) ଏମାନଙ୍କ ପ୍ରତ୍ୟେକରୁ ୮ ତୋଳା ଲେଖାଏଁ ଏବଂ ବାଙ୍କୀ ( ହିଙ୍ଗୁ ), ମେଥୀ, ଜୀର ଏତନହେଁ ମିଶି ଏକପଳ, ଏସମସ୍ତଙ୍କୁ ଏକତ୍ର ଚୂର୍ଣ୍ଣ କରି ସୋରିଷତେଲ ସହିତ ଉତ୍ତମରୂପେ ପିଣ୍ଡ କରିବ । ଏହି ପିଣ୍ଡ ଦୁଇତୋଳା ମାତ୍ରାରେ ଅଳ୍ପ ଉଷ୍ମ ଜଳ ସହିତ ସେବନ କଲେ ଉରୁସ୍ତମ୍ଭ ରୋଗ କ୍ଷୟପ୍ରାପ୍ତ ହୁଏ । ୧୩ ।

## ଅଥାମବାତହର ପ୍ରୟୋଗ ମାହ ।

ସପ୍ତାମୃତେ ରଣ୍ଡ ଜରସ୍ରୁଣାଂ ସାମାନଳଂ ସଙ୍ଗତଂ ନହନ୍ତ ।
ସୂର୍ଯ୍ୟେଁ ଯଥୋଦ୍ୟ ତମଃସମୂହଂ କ୍ୱାଥଃ କଦୁଷ୍ଣେ ଭୁବନେନ ସାକଂ ॥

ଭାଷାର୍ଥ—ଅତଃପର ଆମବାତ ରୋଗ ନାଶକ ଚିକିତ୍ସା । ସପ୍ତା, ଅମୃତା (ଗୁଳୁଚ), ଏରଣ୍ଡ (ଗଡମୂଳ), ସୁର ( ଦେବଦାରୁ ), ଜଗଡ଼ୁ (ଶୁଣ୍ଠୀ) ଏମାନଙ୍କର ଅଳ୍ପ ଉଷ୍ଣ କ୍ୱାଥରେ ଶୁଣ୍ଠୀ ଚୂର୍ଣ୍ଣ

ପ୍ରକ୍ଷେପ କର ପାନ କଲେ, ସୂର୍ଯ୍ୟ ଉଦତ ହୋଇ ଅନ୍ଧକାର ଧ୍ୱଂସ କଲା ପର ଏହା ସର୍ବାଙ୍ଗବ୍ୟାପ୍ତ ଆମବାତ ରୋଗକୁ ବିନଷ୍ଟ କରେ । ୧୪ ।

## ପୁନଶ୍ଚ ।

ଗୀର୍ବାଣରାସ୍ନା ନୃପବର୍ଦ୍ଧମାନ ବର୍ଷାଭୂ ଗୋକଣ୍ଟ ସୁଧା ସପଦ୍ମଂ ।
କ୍ୱାଥଂ ପିବେଦ୍ୱିଶ୍ୱକରେ ! ସମସ୍ତଂ ଖାମାନକେ ସର୍ବବିକାରଯୁକ୍ତେ ॥

**ଭାଷାର୍ଥ**—ପୁନଶ୍ଚ । ହେ ବିଶ୍ୱବରେ ! ଗୀର୍ବାଣ ( ଦେବଦାରୁ ), ରାସ୍ନା, ନୃପ ( ରାଜବୃକ୍ଷ=ସୁନାରି ), ବର୍ଦ୍ଧମାନ ( ଗଡମୂଳ ), ବର୍ଷାଭୂ ( ପୁରୁଣୀ ), ଗୋକଣ୍ଟ ( ଗୋକ୍ଷୁର ), ସୁଧା (ଗୁଳୁଚୀ) ଏମାନଙ୍କ କ୍ୱାଥକୁ ଶୁଣ୍ଠୀ ଚୂର୍ଣ୍ଣ ସହିତ ପାନ କଲେ ସର୍ବପ୍ରକାର ଆମବାତ ଦୂରୀଭୂତ ହୁଏ । ୧୫ ।

## ଅଥ ଶୂଳରୋଗେ ।

ପାଣ୍ୟମୃତାରୁବୁକକଣ୍ଟକ ବିଶ୍ୱରାସ୍ନା
କ୍ଷୁଦ୍ରାଦ୍ୱୟାଗ୍ନି ମଗଧୀ ଚରଣାଗ୍ନିହିଙ୍ଗୁଂ ।
ତୋୟଂ ସହିଙ୍ଗୁ ଲବଣଂ ରୁବୁତୈଳମିଶ୍ରଂ
ଶୂଳାନି ପଂଚମିଦମାଶୁ ହରେତୁ କୃଶାଙ୍ଗି ! । ୧୬ ।

**ଭାଷାର୍ଥ**—ଅନନ୍ତର ଶୂଳରୋଗ ବିଷୟରେ କହୁଛି । ହେ କୃଶାଙ୍ଗି ! ପାଣୀ ( ବରୁଣ ଛେଲି ) ଅମୃତା (ଗୁଳୁଚୀ), ରୁବୁକ ( ଏରଣ୍ଡ =ଗଡ ), କଣ୍ଟକ ( ଗୋକ୍ଷୁର ), ବିଶ୍ୱ ( ଶୁଣ୍ଠୀ ), ରାସ୍ନା, କ୍ଷୁଦ୍ରାଦ୍ୱୟ ( ବେଙ୍କୋଳି, ଅଙ୍କରାନ୍ତି ), ଅଗ୍ନି ( ଚିତ୍ରକ ), ମଗଧୀଚରଣ ( ପିପ୍ପଳୀମୂଳ ), ଅଗ୍ନି ( ରକ୍ତଚିତାମୂଳ ) ଏମାନଙ୍କ ଦ୍ୱାରା ପ୍ରସ୍ତୁତ କ୍ୱାଥକୁ ବାୟୁଜନିତ ଶୂଳରେ ହିଙ୍ଗୁ ଲବଣ ସହିତ, ପିତ୍ତଜନିତ ଶୂଳରେ ସୈନ୍ଧବଲବଣ

ଅନୁପାନ ସହିତ, ଶ୍ଳେଷ୍ମ ଜନିତ ଶୂଳରେ ଜଡ଼ାତେଲ ଅନୁପାନ ଏବଂ ତ୍ରିଦୋଷରେ ଏହି ତିନପ୍ରକାର ଅନୁପାନ ସହିତ ସେବନ କଲେ ସର୍ବପ୍ରକାର ଶୂଳ ରୋଗ ବିନଷ୍ଟ ହୁଏ । ୧୭ ।

## ଅଥୋଦାବର୍ତ୍ତାନାହୟୋଃ ।

ପ୍ରାକ୍ ଭୋଜନଂ ମଧୁଯୁକ୍ତଂ ବିନିହନ୍ତି କାନ୍ତେ !
ସକ୍ଷୌ ପିଚୁନ୍ମିତ କଣାସହିତଂ ଗୁଡ଼ସ୍ୟ ।
କୋଷ୍ଠେ ଶତଛସହିତେ ତ୍ରିବୃତଃ ଶ୍ରୁତାନା—
ମଷ୍ଟଂ ରଜୋ ନଗଦିତଂ ସହିତେ ବିକାରୈଃ । ୧୭ ।

**ଭାଷାର୍ଥ**—ଅନନ୍ତର ଉଦାବର୍ତ୍ତ ଓ ଆନାହ ରୋଗ ଚିକିତ୍ସା । ହେ କାନ୍ତେ ! ତ୍ରିବୃତ୍ (ତିହୁଡ଼ି), ଏକପଳ ପୁରୁଣାଗୁଡ଼ ଏକପଳ, ପିପ୍ପଳୀ ଚୂର୍ଣ୍ଣ ଏକକର୍ଷ ( ଦୁଇତୋଳା ) ଭୋଜନପୂର୍ବରୁ ଖାଇବେଏହି ଏକତ୍ରିତ ଚୂର୍ଣ୍ଣରୁ ଏକକର୍ଷ କମ୍ବା ଏକତୋଳା ମହୁ ସହିତ ସେବନ କଲେ ରୋଗୀ ଉଦାବର୍ତ୍ତ ଓ ଆନାହ ରୋଗରୁ ମୁକ୍ତ ହୁଏ । ୧୭ ।

## ଆନାହାରିରସ ମାହ ।

ଦ୍ୱୌ ହଂସୌ ବଳଷଂଵରୌ କୁରୁ ମମ ପ୍ରାଣପ୍ରିୟେ ! ଦନ୍ତିଜାତ୍
ପୂତାଦ୍‌ଦ୍ୱିଗୁଣଂ ମହାପଡରୁଜଂ ଖଜଂ ତଥା ସ୍ୱଗକଂ ।
ସ୍ନୁକ୍‌କ୍ଷୀରେଣ କୃତା ଲବଙ୍ଗସହିତୋଦାବର୍ତ୍ତମାନାହକଂ
କୋକାଷ୍ଟି ପ୍ରମିତା ବଟୀ ପ୍ରିୟତମେ ! ହନ୍ୟାତ୍ ସୁତପ୍ତାମ୍ବୁନା । ୧୮ ।

**ଭାଷାର୍ଥ**—ଉଦାବର୍ତ୍ତ ଓ ଆନାହ ରୋଗର ଅନାହାରି-ରସ ପ୍ରୟୋଗ କହୁଅଛନ୍ତି । ହେ ପ୍ରାଣପ୍ରିୟେ ! ହେପ୍ରିୟତମେ ! ଶୋଧିତ ପାରା ଏକତୋଳା, ଶୋଧିତ ଗନ୍ଧକ ଏକତୋଳା ଏହାର କଜ୍ଜଳୀ କରିବ । ଏହା ସହିତ ଦନ୍ତୀବୀଜ ଦୁଇତୋଳା, ମହାପଡରୁ (ସୁନାରୁ)—ମଞ୍ଜିଏକତୋଳା ଏଦୁହିଙ୍କୁ ପଞ୍ଚସିଝୁଖୀରଦ୍ୱାରା

ମର୍ଦ୍ଦନକର ବରଗୋଳ ମଞ୍ଜି ପ୍ରମାଣ ବଟିକା କରବ । ଏହି ବଟିକା ଲବଙ୍ଗଚୂର୍ଣ୍ଣ ଓ ଉଷ୍ଣଜଳସହିତ ସେବନକଲେ ଆନାହ ଓ ଉଦାବର୍ତ୍ତ ରୋଗ ପ୍ରଶମିତ ହୁଏ । ୧୮ ।

## ଅଥ ଗୁଳ୍ମେ ।

ଶିବାପ୍ଲୀହ ଶଙ୍ଖ ଯବକ୍ଷାରଯୁକ୍ତୋ,
ହରେଦ୍ଗୁଳ୍ମରୋଗଂ ତଥାଗାତ୍ରକନ୍ଦଃ ।
ପୟଃପାତଦୋ ହେ ଶରଚ୍ଚାରୁଚନ୍ଦ୍ରା-
ନନେ ! ଯୋଗଯୁକ୍ତଃ କମନୈୟଃ ପ୍ରୟୋଜିତଃ ।୧୯ ।

**ଭାଷାର୍ଥ**—ଅନନ୍ତର ଗୁଳ୍ମରୋଗ ଚିକିତ୍ସା । ହେ ଶାରଦ ଚନ୍ଦ୍ରବଦନେ ! ଶିବା (ହରଡ଼ା),ପ୍ଲୀହଶଙ୍ଖ (ଶରଫୁଙ୍ଖା),ଯବକ୍ଷାର ଏମାନଙ୍କର ଚୂର୍ଣ୍ଣ ଗୁଳ୍ମରୋଗ ନାଶକରେ । ଗାତ୍ରକନ୍ଦ (ରସୁଣ) ଏକତୋଳା, ଦୁଗ୍ଧ ଦୁଇତୋଳା ଏ ଦୁହିଙ୍କୁ ଚୌଦତୋଳା ଜଳରେ ସିଦ୍ଧକର ଦୁଗ୍ଧାବଶେଷ ରଖି କନାରେ ଛାଣି ଉକ୍ତ ଦୁଗ୍ଧକୁ ପାନ କଲେ ଗୁଳ୍ମରୋଗ ଧ୍ୱଂସପ୍ରାପ୍ତ ହୁଏ । ୧୯ ।

## ପୁନଶ୍ଚ ।

ପଥ୍ୟାମ୍ଲବେତସବଚୂଯବଶୂକହିଙ୍ଗୁ-ସିନ୍ଧୂତ୍ଥଚବ୍ୟକଚଜଃ ସମମୁଷ୍ଣତୋୟୈଃ ।
ପୀତଂପ୍ରିୟେ ! ଦରହରେଣ୍ଣକଳୋତ୍ଥଗୁଳ୍ମଂଲଜ୍ଜାଂ ବସନ୍ତ ଭବନୂତନକାମିନୀନା ୨୦ ।

**ଭାଷାର୍ଥ**—ଉକ୍ତ ଗୁଳ୍ମରୋଗରେ ପୁନଃ ପ୍ରୟୋଗ । ହେ ପ୍ରିୟେ ! ପଥ୍ୟ ( ହରଡ଼ା ), ଅମ୍ଳ ବେତସ, ବଚ୍ଚ ( ବଚ ), ଯବଶୂକ ( ଯବକ୍ଷାର ), ହିଙ୍ଗୁ, ସିନ୍ଧୂତ୍ଥ ( ସୈନ୍ଧବ ଲବଣ ), ଚବ୍ୟକ ( ଚୂଅଣୀ ) ଏମାନଙ୍କର ଚୂର୍ଣ୍ଣ, ସମସ୍ତରେ ଉଷ୍ଣଜଳ ସହିତ ପାନ କଲେ, ବସନ୍ତ ନଗନା ସ୍ତ୍ରୀମାନଙ୍କ ଲଜ୍ଜା ହରଣ କଲାପରି ସକଳ ଗୁଳ୍ମରୋଗ ହରଣ କରେ । ୨୦ ।

## ସର୍ଗଂ ପ୍ରଶଂସନ୍ନାହ ।

କାବ୍ୟେ କୌତୁକଷଟ୍‌ପଦେ କରଚନ୍ଦ୍ରେ ନାରାୟଣେନାଗମନ୍
ସର୍ଗୋ ବୈଦ୍ୟଜନପ୍ରମୋଦକୁଶଳୋ ଯଃ ପଞ୍ଚମଃ ସଖ୍ୟସ୍ମା ।
ଯଂ ଦୃଷ୍ଟ୍ୱା ନିପୁଣା ଭବନ୍ତି କୁଶଳା ବ୍ୟାଖ୍ୟାସୁ ଶୀଘ୍ରଂ ବୁଧା
ଜ୍ଞାତ୍ୱାର୍ଥଂ ସହସା ନିଯୋଗନବହେ ନିତ୍ୟଂ ପରପ୍ରୀତିଦଂ । ୬୧ ।

**ଭାଷାର୍ଥ**— ସର୍ଗ ପ୍ରଶଂସା କରି କହୁଅଛନ୍ତି । ନାରାୟଣ କବିଙ୍କ ବିରଚିତ ବୈଦ୍ୟମାନଙ୍କ ଆନନ୍ଦ ବର୍ଦ୍ଧକ କୌତୁକ-ଷଟ୍‌ପଦ କାବ୍ୟର ପଞ୍ଚମ ସର୍ଗ ସମାପ୍ତ ହେଲା । ବିଜ୍ଞ ବ୍ୟକ୍ତିମାନେ, ପରମପ୍ରୀତିକର ଯାହା ଅବଲୋକନ କରି ବ୍ୟାଖ୍ୟାରୁ ସମସ୍ତ ଅର୍ଥ ଜାଣି ଔଷଧ ପ୍ରୟୋଗ ବିଷୟରେ ନିପୁଣ ହୋଇ ଆନନ୍ଦ ଲାଭ କରୁଅଛନ୍ତି । ୬୧ ।

ପଞ୍ଚମ ସର୍ଗ ସମାପ୍ତ ।



## ଷଷ୍ଠଃ ସର୍ଗଃ ।

ଅତଃପରଂ ପାବନସ୍ମରୁଚନ୍ଦ୍ରା-ନନେ ! ମୁଖାବ୍ଜେ ମଧୁବନ୍ତିବୋଧ ।
ସୁବର୍ଣ୍ଣଚମ୍ପପ୍ରତମ ପ୍ରକାଶେ ! ଚକଣ୍ଡିତଂ ଗୁଳ୍ମମୁଖାମୟେଷୁ । ୧ ।

**ଭାଷାର୍ଥ**—ହେ ପୂର୍ଣ୍ଣଚନ୍ଦ୍ରାନନେ ! ହେ ସ୍ୱର୍ଣ୍ଣଚମ୍ପକତୁଲ୍ୟ କାନ୍ତେ ! ଏହା ଉତ୍ତାରୁ କ ପଞ୍ଚମସର୍ଗ ପରେ ଏହି ଷଷ୍ଠସର୍ଗରେ ଗୁଳ୍ମାଦି ରୋଗଠାରୁ ଆରମ୍ଭକରି ବିଷରୋଗ ପର୍ଯ୍ୟନ୍ତ ଚିକିତ୍ସା ବିଷୟ ବର୍ଣ୍ଣନା କରୁଅଛୁଁ । ଏହା! ତୁମ୍ଭେ ମୁଖପଦ୍ମରେ ମଧୁପାନ ଗ୍ରହଣ କର । ୧ ।

ମାଗଧୀ ମଗଧଜା ସହପାଦା ବହ୍ନିବର୍ଦ୍ଧିକଳଧି ପ୍ରଭବୋପ୍ତଃ ।
ରେଣୁକେଷ ସୁରସ୍ୱା ପରପୀତୋ ହନ୍ତି ଗୁଳ୍ମନିବହଂ କମଳାକ୍ଷି ! । ୨ ।

**ଭାଷାର୍ଥ**—ହେ କମଳାକ୍ଷି ! ମାଗଧୀ ( ପିପ୍ପଳୀ ), ସହଯଦା ମଗଧଜା ( ପିପ୍ପଳାମୂଳ ), ବହ୍ନି ( ଗୁଳୁଆଣିଜ ), ବହ୍ନି ( ଚିତାମୂଳ ), ଜଳଧିପ୍ରଭବ (ସୈନ୍ଧବଲବଣ ) ଏମାନଙ୍କର ଚୂର୍ଣ୍ଣ ଅର୍ଦ୍ଧତୋଳା ମାତ୍ରାରେ ମଦ୍ୟସହିତ ସେବନ କଲେ ସକଳ ପ୍ରକାର ଗୁଳ୍ମରୋଗ ବିନଷ୍ଟ ହୁଏ । ୨ ।

## ଅଥ ହୃଦ୍ରୋଗେ ।

ସିନ୍ଧୁଭବକ୍ଷାରଯବଜଃ ପ୍ରଯୁକ୍ତଂ ଦଶତେନଜତୋୟଂ ହୃଦୟାମୟଘ୍ନଂ ।
ଜୋଷ୍ଠାମ୍ବୁନା ବା ହ୍ୟବନାବ୍ଧିଜାତଂ ହିଙ୍ଗୂଦ୍ଧୃତଂ କୋକିଳକଣ୍ଠକଣ୍ଠେ ! ।୩

**ଭାଷାର୍ଥ**—ଅନନ୍ତର ହୃଦ୍‌ରୋଗ ଚିକିତ୍ସା । ହେ କୋକିଳ-କଣ୍ଠ-କଣ୍ଠେ ! ( ପିକସ୍ୱରେ ! ) ସିନ୍ଧୁଭବ (ସୈନ୍ଧବ ଲବଣ ), ଯବକ୍ଷାର, ଏ ପ୍ରତ୍ୟେକରୁ ୧ ମସାମାତ୍ରା ଦଶଦ୍‌କେଜତୋୟ (ଦଶମୂଳକ୍ୱାଥ) ସହିତ ସେବନ କଲେ ହୃଦ୍ରୋଗ ନଷ୍ଟ ହୁଏ, ଏବଂ ହ୍ୟବନ (ଶୁଣ୍ଠୀ ), ଅବ୍ଧିଜାତ ( ସୈନ୍ଧବ ଲବଣ ), ହିଙ୍ଗୁ ପ୍ରତ୍ୟେକ ଅର୍ଦ୍ଧମସା ମାତ୍ରା ଉଷ୍ମଜଳ ସହିତ ପିଇଲେ ହୃଦ୍‌ରୋଗ ବିନାଶ କରେ । ୩ ।

## ଅଥ ମୂତ୍ରକୃଚ୍ଛ୍ରେ ।

ଦୁରାଲଭାବରଗଧକଣ୍ଟକାଶ୍ମ ଶିଳାଭିଦାକାଶଶିବାକୃଥନାଂ ।
ଜଳଂ ନିହନ୍ତ୍ୟାଶୁ ଚ ମୂତ୍ରକୃଚ୍ଛ୍ରଂ ମଧୂପ୍ଲୁତଂ ମାଦକଶାଲୂଶାକ୍ଷେ ! । ୪ ।

**ଭାଷାର୍ଥ**—ଅନନ୍ତର ମୂତ୍ରକୃଚ୍ଛ୍ର ରୋଗ ଚିକିତ୍ସା । ହେ କାମୋଦ୍ଦୀପକ-ଲୋଚନେ ! ଦୁରାଲଭା, ଆରଗ୍ୱଧ ( ସୁନାରି ), କଣ୍ଟକାଶ୍ମ (ଅଙ୍କରନ୍ତି),ଶିଳାଭିଦା (ପାଷାଣ ଭେଦୀ) କାଶ (କାଇଁଶମୂଳ), ଶିବା (ହରିଡ଼ା), କୃଥ (କୁଶମୂଳ) ଏମାନଙ୍କର କ୍ୱାଥ ମଧୁ-ସହିତ ସେବନ କଲେ ମୂତ୍ରକୃଚ୍ଛ୍ର ରୋଗକୁ ବିନାଶ କରେ ।୪

ନଳେକ୍ଷୁରକାଶକୁଶେଷୁ ତୋୟଂ ସିତାନ୍ୱିତଂ ହନ୍ତି ଚ ମୂତ୍ରରୋଧଂ ।
ତଥା ପ୍ରଲେପାତ୍ତ୍ରପୁଷୋଦ୍ଭବେଷ୍ଟଂ ଫଳଂ ହରତ୍ୟାଶୁ ହି ବସ୍ତିକାସ୍ୟାଃ । ୫।

**ଭାଷାର୍ଥ**—ନଳ (ବାଘନଳ), ଇକ୍ଷୁର (ଅଣଖିଆ), କାଶ (କାଇଁଶ), କୁଶ, ଇକ୍ଷୁ ଏମାନଙ୍କର ମୂଳ ସିଝା କରି ଜଳ ପରୀକ୍ଷା ପୂର୍ବକ ସେବନ କଲେ ମୂତ୍ରକୃଚ୍ଛ୍ର ରୋଗର ବିନାଶ ହୁଏ । ଆଉ ମଧ୍ୟ କଇଁଚି କାକୁଡ଼ି ଫଳ କାଞ୍ଜିରେ ବାଟି ଲେପ ଦେଲେ ଉକ୍ତ ରୋଗକୁ ଶୀଘ୍ର ହରଣ କରେ । ୫ ।

## ଅଥାଶ୍ମର୍ଯ୍ୟାଂ ।

ଏଳାଶ୍ୱଦଂଷ୍ଟ୍ରା-ମଧୁକାଶିଳାଭିତ୍କୌନ୍ତୀ-କଣୈରଣ୍ଡବୃଷୈଃ କଷାୟଃ ।
ହନ୍ତ୍ୟଶ୍ମରୀମାଶୁ ଚ ମୂତ୍ରକୃଚ୍ଛ୍ରଂ ପ୍ରାବୃଟ୍ ପୟୋଦାନିବ କୋଟିଦନ୍ତେ । ୬ ।

**ଭାଷାର୍ଥ**—ଏହା ଉପରୁ ଅଶ୍ମରୀରୋଗ ଚିକିତ୍ସା ପ୍ରଣାଳୀ କହୁଅଛନ୍ତି । ହେ ଶିଖରିଦଶନେ ! ଏଳା ( ଅଳେଇଚ ), ଶ୍ୱଦଂଷ୍ଟ୍ରା ( ଗୋଖ୍ରୁ ), ମଧୁକା ( ଯଷ୍ଟିମଧୁ ), ଶିଳାଭିତ୍ ( ପାଷାଣଭେଦୀ ), କୌନ୍ତୀ (ରେଣୁକା), କଣା ( ପିପ୍ପଳୀ ), ଏରଣ୍ଡ ( ଗଉମୂଳ ), ବୃଷ ( ବାସଙ୍ଗ ) ଏମାନଙ୍କର ପାଚନ, ବର୍ଷାକାଳ ଧୂଳିପଟଳ ବିନାଶ କଲାପରି ଅଶ୍ମରୀ ଏବଂ ମୂତ୍ରକୃଚ୍ଛ୍ର ରୋଗକୁ ସତ୍ୱର ବିନାଶ କରେ । ୬ ।

## ଅଥ ମେହରୋଗେ ।

ସିତଶତଦଳନେତ୍ରେ ! ମନ୍ଥ୍ରତା ପୁଞ୍ଜପାଣି !
କ୍ଷିପତି ସପଦି ପୀତଂ ମେହରୋଗଂ ସମସ୍ତଂ ।
ସମଧୁ ମଧୁରବାଣେ ! ଚନ୍ଦ୍ରିକାମାତୃସିଦ୍ଧଂ
ଗୁଣଗଣଜିତବଧ୍ୱେ ! ଶମ୍ବରଂ ଶଙ୍କରାକ୍ଷି ! । ୭ ।

**ଭାଷାର୍ଥ**—ଅନନ୍ତର ମେହବେଗ ଚକଷା । ହେ ଶ୍ୱେତଦନ୍ତେ ! ହେ ମଧୁରଭାଷିଣି ! ହେ ମଙ୍ଗଳମୟେ ! ହେ ସୌନ୍ଦର୍ଯ୍ୟ-ଗଣିରସିକେ ! ହେ ବଣ୍ଣିତ ଗୁଣାଧାରେ ! ଚନ୍ଦ୍ରିକାମାତୃସିନ୍ଧ =ଚନ୍ଦ୍ରିକା (ଗୁଳୁଚୀ) ମାତୃ (ଅଁଳା) ଏ ଦୁହିଙ୍କ ପାଚନ ମଧୁଯୁକ୍ତ କରି ସେବନ କଲେ ସମସ୍ତ ମେହବେଗ ବିନାଶ କରେ ।

## ଅପରଂ ଗୃହ୍ୟ ।

ସୁଧାନପୀଠାଧରତଃ ସୁଶୀଳେ । କଷାୟ୍ୟବାନ୍ୟଧିପ ଯଥା ଚେ
ହରେତ୍ପ୍ରମେହଂ ସହଚରି ର୍ବିକାରୈ ମୂର୍ଦ୍ଧନ୍ଦକୂଳେ ଶିଖିନୋ ରସୋବା ॥ ୮

**ଭାଷାର୍ଥ**—ମେହବେଗ ଶଷହେରେ ଚକଷାନ୍ତର । ହେ ସୁଶୀଳେ ! ସୁଧା (ଗୁଳୁଚୀ) ଦୁଇତୋଳାକୁ ବତିଶ ତୋଳା ଜଳରେ ସିଦ୍ଧ କରି ଚତୁର୍ଥାଂଶ ମାତ୍ର ଅବଶିଷ୍ଟ ରଖି ମଧୁ ପ୍ରକ୍ଷିପ୍ତ କରି ସେବନ କଲେ ଉପସର୍ଗ ସହିତ ମେହବେଗ ନଷ୍ଟ ହୁଏ, ଏବଂ ମୟୂରଚୂଳିଆ ଗଛର ରସ ଦୁଇତୋଳା, ମଧୁ ସହିତ ପାନ କଲେ ମଧ୍ୟ ଉକ୍ତବେଗ ବିନଷ୍ଟ ହୋଇଥାଏ । ୮ ।

## ଅଥ ସ୍ଥୌଲ୍ୟେ ।

ସୁଧୈଳା ବଲ୍ଲେନ୍ଦ୍ର ଜିକଟୁକୁଣିକାନାଂ ଚନେଟସ୍ଥା
ପ୍ରବୃଦ୍ଧାନାଂ କ୍ଷୋଦୈର୍ଜତୁ ଗୁଡିକେୟଂ ମୃଗଦୃଶେ !
ତଦାଶ୍ଳେଷଃ ସ୍ଥୌଲ୍ୟଂ ନତନୂଜନନଂ ମନ୍ଥରଗତେ !
ବିକାରଂ ହେ ବାଳେ ! ଶିଶିରସମୟଃ ପଙ୍କଜମିବ । ୯ ।

**ଭାଷାର୍ଥ**—ଅନନ୍ତର ସ୍ଥୌଲ୍ୟବେଗ ଚକଷା । ହେ ମୃଗଦୃଶେ ! ସୁଧା (ଗୁଳୁଚୀ) ୧ଭାଗ, ଏଳାଇଚ ୨ଭାଗ, ବଲ୍ଲ (ବଢ଼ଙ୍ଗ) ୩ଭାଗ, ଇନ୍ଦ୍ର (ଇନ୍ଦ୍ରଯବ) ୪ଭାଗ ତ୍ରିକଟୁ (ଶୁଣ୍ଠୀ ୫ଭାଗ,

ପିପ୍ପଳୀ ୬ଭାଗ, ମରିଚ ୭ଭାଗ ), କୁଷ୍ଠକ ( ଗୁଗ୍ଗୁଳୁ ) ୮ଭାଗ ଏପରି କ୍ରମେ ଏକ ଏକ ଭାଗ ବୃଦ୍ଧି କରି ଏଚୂର୍ଣ୍ଣର ତୋଳାଏ ପରିମାଣର ବଟିକା ସେବନ କଲେ ସ୍ଥୌଲ୍ୟରୋଗ ବିନାଶ ହୁଏ, ଯେପରିକି ହେ ମଞ୍ଜରଗମନେ ! ତୁମ୍ଭର ଆଲିଙ୍ଗନ କାମ ବିକାରକୁ ଏବଂ ଶିଶିରଜାତ ବେଦନକୁ ବିନାଶ କରିଥାଏ । ୯ ।

## ଅଥୌଦରେ ।

ପାଠ୍ୟଂ ବହ୍ନି ବିଡ଼ଙ୍ଗଚନ୍ଦନମିଦଂ ଭାଗଶସ୍ତ୍ରଂ କଲ୍ପୟେ—
ଦେଷାଂ ଦ୍ୱୈଗୁଣିତାଜ୍ଜଗତ୍ସୁରନଗ ପ୍ରାବୃଷ୍ଣୁବାଂ ଭାଗତଃ ।
ଚତ୍ୱାର ସ୍ତ୍ରିବୃତଃ ସୁଚେଷ୍ଟିତମିଦଂ କ୍ଷୀରେଣ ବା ଯୋଜକୈଃ
ପୀତେନୋଦରକଃ ସୁଖଂ ହ୍ୱ ଲଭତେ ହେ ହେମକୁମ୍ଭସ୍ତନ !। ୧୦ ।

**ଭାଷାର୍ଥ**—ଅନନ୍ତର ଉଦର ରୋଗ ବିଷୟକ ଚିକିତ୍ସା । ହେ ହେମକୁମ୍ଭସ୍ତନି ! ପାଠ୍ୟ (ପୁଆଣୀ), ବହ୍ନି (ରକ୍ତଚିତା), ବିଡ଼ଙ୍ଗଚନ୍ଦନ ଏମାନଙ୍କର ପ୍ରତ୍ୟେକେ ଏକଏକ ଭାଗଲେଖାଏଁ ପନଭାଗ,ଜଗତ୍ (ଶୁଣ୍ଠି), ସୁରନଗ ( ଦେବଦାରୁ ), ପ୍ରାବୃଷ୍ଣୁ (ପୁରୁଣୀ) ଏ ପ୍ରତ୍ୟେକେ ଦୁଇ ଦୁଇ ଭାଗ ଛଭାଗ; ଏବଂ ତ୍ରିବୃତ୍ ( ତୁହୁଡ଼ି ) ଚାରିଭାଗ ଏ ସମସ୍ତଙ୍କୁ ଏକତ୍ର ଚୂର୍ଣ୍ଣକରି ତୋଳାଏ ପରିମାଣରେ ଗୋଦୁଗ୍ଧ ବା ଗୋମୂତ୍ର ସହିତ ସେବନକଲେ ଉଦର ରୋଗୀ ଆରୋଗ୍ୟ ଲାଭକରେ । ୧୦ ।

## ଅଥ ଶୋଥେ ପ୍ରୟୋଗଦ୍ୱୟଂ ।

ଜଗନ୍ତି ଶାଜାଜି ଘନମଗଧଜାମାଗଧସୁତା
କ୍ଷପାମୂର୍ତ୍ତ୍ୱା ଗ୍ରନ୍ଥୀକଘନବୃନ୍ଦଜାରର୍ବ୍ବରଚିତଃ ।
ପଲ୍ଲବଃ ଶୋଥଘ୍ନୋ ଭବତି ସହସା ବୋମ୍ବୁପସ୍ତୃଷା
ନବ୍ୟତସ୍ତୃଷ୍ୟାଙ୍ଗଭିଃ କମଳଦଳନେତ୍ରେ । ପ୍ରଣୟିନି !। ୧୧ ।

**ଭାଷାର୍ଥ**—ଅନନ୍ତର ଶୋଥରୋଗେ ଚକ୍ରପାଣ୍ୟାହ୍ୱସ୍ତ । ହେ ପଦ୍ମଦଳନେତ୍ରେ ! ଜଗତ୍ (ଶୁଣ୍ଠୀ),ଚଜ (ରକ୍ତଚିତା),ଅଜାଜୀ (ଜୀରା),ଗଜମଗଧଜା (ଗଜପିପ୍ପଳୀ), ମାଗଧସୁତା (ପିପ୍ପଳୀ), କ୍ଷପା (ହଳଦୀ), ଅମ୍ବଷ୍ଠା ( ଅକାନବିନ୍ଧ), ଛଚ୍ଛୀବ (ପିଷ୍ଟଳୀମୂଳ),ଘନ ( ମୁଥା ), ବୃହତୀ (ଭେଙ୍ଗାଭେଙ୍ଗା)ଏମାନଙ୍କରଚୂର୍ଣ୍ଣ ଅଲ୍ପଉଷ୍ଣଜଳରେ ଅଧତୋଳା ପରମାଣରେ ସେବନକଲେ ପଥ୍ୟରେ ରହିଲେ ଶୋଥରୋଗ ନାଶ କରଇ । ୧୧ ।

କୁବଳୟଦଳନେତ୍ରେ ! ଶୋଥରୋଗାପହାର,
ପ୍ରଭବତ ମଧୁଯୁକ୍ତଂ ଶମ୍ବରଂ କୋଷ୍ଠଦନ୍ତେ !
ଦହନଦହନଚ୍ଛିନ୍ନା ବିଶ୍ୱ ବର୍ଷାଭ ଦୋଷା-
ସୁରନଗହିମକନ୍ୟା-ପର୍ଣ୍ଣୀଣୀଭି ବିଧେହି । ୧୨ ।

**ଭାଷାର୍ଥ**—ପୁନଶ୍ଚ ହେ କୁବଳୟ ଦଳନେତ୍ରେ ! ଦହନ ( ଚିତ୍ରଆ ), ଦହନ ( ଧଳାଚିତା ), ଛିନ୍ନା ( ଗୁଳୁଚୀ ), ବିଶ୍ୱ ( ଶୁଣ୍ଠୀ ), ବର୍ଷାଭ ( ପୁରୁଣୀ ), ଦୋଷା ( ହଳଦୀ ), ସୁରନଗ (ଦେବଦାରୁ), ହିମକନ୍ୟା (ହରଡ଼ା ), ପର୍ଣ୍ଣୀଣୀ (ଦାରୁହଳଦୀ) ଏମାନଙ୍କ ପାଚନ ମଧୁ ପ୍ରକ୍ଷେପ ପୂର୍ବକ ପାନକଲେ ଶୋଥରୋଗ ବିନଷ୍ଟ ହୁଏ । ୧୨ ।

## ବୃଦ୍ଧି ରୋଗ ହରକଷାୟମାହ ।

ଇନ୍ଦ୍ରବାରୁଦ୍ଭବଂ ପରପୀତଂ ବୃଦ୍ଧିରୋଗନିବର୍ହଂ ଭୁରୁଚୈଲୈଃ ।
ନୈତଂ ସୁବଚନେ ! ସୁରଯାଣାଂ ଜାବନେନ ଚ ରକ୍ଷିତ୍ତିନାନ୍ତେ ।୧୩।

**ଭାଷାର୍ଥ**—ବୃଦ୍ଧିରୋଗ ନାଶକାରୀ ପାଚନ । ହେ ସୁବଚନେ ! ଗୋମୂତ୍ର ଓ ଜଡ଼ାତେଲ ମିଶାଇ କଇଁଶିକାକୁଡ ମୂଳର ଚୂର୍ଣ୍ଣକୁ ସୂକ୍ଷ

ଓଜନ ପ୍ରମାଣରେ ସେବନ କଲେ ଧନଦ୍ଧନରେ ସମସ୍ତ ପ୍ରକାର ବୃଦ୍ଧିରୋଗ କ୍ଷୟପ୍ରାପ୍ତ ହୁଏ । ୧୩ ।

## ଶ୍ଲୀପଦହର ପ୍ରୟୋଗମାହ ।

ବ୍ୟୋଷାଗ୍ନିମୂଷଚବ୍ୟଦାରୁଜନନ ପାଣିଶ୍ୱଦଂଷ୍ଟ୍ରାବଲ-
ଛିନ୍ନାନାଂ ଖଳୁ ବୃଦ୍ଧଦାରକକରକ୍ଷ୍ମୂଣ୍ଣଂ ଭବେଦ୍ଭୋଜନାତ୍ ।
ପୀତ୍ୱା କାଞ୍ଜିକବାରଣା ବଜସ୍ପୃତେ ହିନ୍ଦ୍ୱୋର ! ଶ୍ଲୀପଦଂ
ପାପୌଘଂ ହରନାମ ଜାତବଦସ୍ୟଂ ବା ଭାନୁରାନୂସ୍ତମଃ । ୧୪ ।

**ଭାଷାର୍ଥ**—ଶ୍ଲୀପଦ ରୋଗ ନାଶକ ଚକହା । ହେ ହିନ୍ଦୋଦର ! ଯେପରି ହରିନାମ ପାପରାଶିକୁ, ସୂର୍ଯ୍ୟ ଅନ୍ଧକାରକୁ ଧ୍ୱଂସ କରନ୍ତି ସେପରି ବ୍ୟୋଷ ( ଶୁଣ୍ଠୀ ପିପ୍ପଳୀ ମରିଚ ), ଅଗ୍ନିମୂଷ ( ଲଜକୁଳୀ ), ଚବ୍ୟ [ ଗୁଇଁକାଠ ], ଦାରୁ (ଦାରୁହଳଦୀ), ଋଜନ [ ହଳଦୀ ], ପାଣୀ [ ବରୁଣଛେଲି ], ଶ୍ୱଦଂଷ୍ଟ୍ରା ( ଗୋକ୍ଷୁର ), ବଲ [ ହରଡ଼ା, ବାହାଡ଼ା, ଅଁଳା ], ଛିନ୍ନା ( ଗୁଳୁଚୀ ), ସମ ପରିମାଣରେ ଚୂର୍ଣ୍ଣ କରି, ସମସ୍ତ ଚୂର୍ଣ୍ଣର ସମାନ ପରିମାଣ ବୃଦ୍ଧଦାରକ ଚୂର୍ଣ୍ଣ ମିଶାଇ ଅର୍ଦ୍ଧତୋଳା ମାତ୍ରା କାଞ୍ଜିପାଣିରେ ସେବନ କଲେ ଶ୍ଲୀପଦ ରୋଗକୁ ବିନାଶ କରେ । ୧୪ ।

## ବଦ୍ଧ୍ରହର କଷାୟମାହ ।

ତଣ୍ଡବଗୁଡୂଚ୍ୟ ନମ୍ବ କୃଷ୍ଣା ଯାସ୍ୱନ୍ତକା ଯଷ୍ଟି କଷିରୂମୂଳୈଃ
ଜଳଂ ଜସେଦ୍ ବଦ୍ଧ୍ରରୋଗମୁକ୍ତଂ ନ ସ୍ୱଚ ସଂହତୁରସ୍ୱେ ବଧେହ । ୧୫ ।

**ଭାଷାର୍ଥ**—ବଦ୍ଧ୍ର ରୋଗ ନାଶକ କଷାୟ । ବଣ ( ଛରୁଆଣ ), ତଣ ( ହରଡ଼ା, ବାହାଡ଼ା, ଅଁଳା ), ଗୁଳୁଚ, ନମ୍ବଛେଲି, କୃଷ୍ଣା

[ ପିତ୍ତଳୀ ], ଯାମ୍ବୁନ୍ତକା [ ବାଉଁଶଁଜା ], ଯଷ୍ଟିକ ( ଯାଠୀମଧୁ ), ଶିଗ୍ରୁ [ ସଜନା ] ମୂଳ ଏମାନଙ୍କର ପାଚନ ସେବନ କଲେ ଭୟଙ୍କର ବଦ୍ଧ୍ମ ରୋଗ ନଷ୍ଟ ହୁଏ । ଏ ବିଷୟରେ ସନ୍ଦେହ କର ନାହିଁ ।୧୫।

## ଅଥ ବ୍ରଣାଦୌ ।

ଜାତୀ ନିମ୍ବ ପଟୋଳପତ୍ର କଟୁକା ଦାର୍ବୀନିଶା ଶାରିବା-
ମଞ୍ଜିଷ୍ଠାଭୟସିକ୍ଥ ତୁତ୍ଥ ମଧୁକୈର୍ନକ୍ତାହ୍ୱବୀଜୈଃ ସମୈଃ ।
ସର୍ପିଃ ସିଦ୍ଧମନେନ ସୂକ୍ଷ୍ମବଦନା ମର୍ମାଶ୍ରିତା ସ୍ରାବିଣୋ
ଗମ୍ଭୀରାଃ ସରୁଜୋ ବ୍ରଣାଃ ସଗତିକାଃ ଶୁଷ୍ୟନ୍ତି ରୋହନ୍ତି ଚ ।୧୬।

**ଭାଷାର୍ଥ**—ଅନନ୍ତର ବ୍ରଣାଦି ରୋଗମାନଙ୍କ ବିଷୟରେ କହନ୍ତି । ଜାଈଫୁଲ ପତ୍ର, ନିମ୍ବପତ୍ର, ପଟୋଳପତ୍ର, କଟୁକି, ଦାରୁ-ହଳଦୀ, ହଳଦୀ, ଶେତମାରୁ, ମଞ୍ଜିଷ୍ଠା, ମହଣ, ତେଣାଚେର, ମହୁଲରିଥିଆ, ଯଷ୍ଟିମଧୁ, ନିଳମଞ୍ଜି ଏ ସମସ୍ତ ସମାନ ଭାଗରେ ଏକତ୍ର କରି; ଏହାକୁ ପାଣିରେ ବାଟି ଗୁଣ୍ଡାଦିଅ ଘୃତ ସହିତରେ କଳ୍କବିଧି ଅନୁସାରେ ପାକ କରିବ । ଏହି ଘୃତ କ୍ଷତସ୍ଥାନରେ ଲଗାଇଲେ ବ୍ରଣଜନିତ ସମସ୍ତ ପ୍ରକାର କ୍ଷତ ଶୁଖିଯାଏ ଏବଂ ବ୍ରଣ ପୂରିଆସେ । ୧୬ ।

## ସିନ୍ଦୂରାଦ୍ୟ ତୈଳମାହ ।

ସିନ୍ଦୂରକୁଷ୍ଠ ଦଶମୂଳ ରସୋନମିଶ୍ରୈ-
ର୍ଜୋପିଷ୍ଟ ବହ୍ନିବଲକଣ୍ଟୀ ସହଟୈ ର୍ବିପକ୍ୱଂ
ତୈଳଂ ଜଟେଶ୍ୱରବଳ କୁଷ୍ଠ ସମସ୍ତରୋଗାନ୍,
କାନ୍ତେ ! ସୁକାନ୍ତନୟନେ ! କୁଶକୋଷ୍ଠଶଲେ ! । ୧୭ ।

**ଭାଷାର୍ଥ**—କୁଷ୍ଠରୋଗରେ ସିନ୍ଦୂରାଦ୍ୟ ତୈଳ । ହେ ସୁକାନ୍ତ ନୟନେ ! ହେ କୁଶାଙ୍ଗକୁଲେ ! ହେ ପ୍ରିୟେ ! ଫକାସିନ୍ଦୂର, କୁଡ଼,

ମହୁରା, ହିଙ୍ଗୁ, ରସୁଣ, ଗୋରୋଚନା, ରକ୍ତଚିତା, କୁନଟି ( ମନଃଶିଳା ) ଏମାନଙ୍କୁ ସମସ୍ତଗରେ ୧ସେର ଆଣି କଳ୍କବଧି ଅନୁସାରେ ୪ସେ ୧ ସୋରିଷ ତେଲରେ ପାକ କରିବ । ଏହି ତେଲ ଲଗାଇଲେ ଯାବତୀୟ କୁଷ୍ଠରୋଗ ବିନଷ୍ଟ ହୁଏ ।୧ ୭ ।

## ଅଥ ଭଗ୍ନରୋଗେ ।

ଶ୍ରୁତ୍ୱା ତେ ଗତଭୃଙ୍ଗଗୁଞ୍ଜଂ ପ୍ରଚଳିତା ଜାତତ୍ରପା ମାନସଂ ।
ତଦ୍ୱଭଗ୍ନଗଦୋଽସ୍ତୁନଂ ବ୍ରଜନ୍ତେ ସସେବ୍ୟମାନାଦ୍ଗଜାତ୍
ଲକ୍ଷାପାଣ୍ଡୁଭବାଶ୍ୱଗନ୍ଧସହିତୈଃ କନ୍ୟାସ୍ଥିସଂହାରକୈ-
ର୍ବାଟ୍ୟାଳୈଃ ସହ କୌଶିକୈର୍ବିରଚିତାଚନ୍ଦ୍ରାଙ୍ଗଜାଃ ସୁପ୍ରିୟେ ! ।୧୮।

**ଭାଷାର୍ଥ**—ଅନନ୍ତର ଭଗ୍ନରୋଗ ଚିକିତ୍ସା । ହେ ସୁପ୍ରିୟେ ! ଭ୍ରମର ଗତ ଗୁଞ୍ଜନ ଶ୍ରବଣ କରି ରାଜହଂସମାନେ ଲଜ୍ଜିତ ହୋଇ ଯେପରି ମାନସ ସରୋବରକୁ ପ୍ରସ୍ଥାନ କରନ୍ତି, ସେହିପରି ଲାଖ, ପାଣ୍ଡୁଭବ ( ଅର୍ଜୁନ ) ଛେଲି, ଅଶ୍ୱଗନ୍ଧା, କନ୍ୟା [ ଘିକୁଆଁରି ], ଅସ୍ଥିସଂହାରକ ( ହାଡ଼ଭଙ୍ଗା ), ବାଟ୍ୟାଳ ( ବାଣ୍ଡିଅଁ । ), କୌଶିକ ( ଗୁଗ୍ଗୁଳୁ ) ଏମାନଙ୍କୁ ଏକତ୍ର ଚୂର୍ଣ୍ଣ କରି ଅର୍ଦ୍ଧତୋଳା ପରିମାଣରେ ଉଷ୍ଣ ଜଳରେ ସେବନ କଲେ ଭଗ୍ନରୋଗ ଛାଡ଼ିଯାଏ ।୧୮ ।

## ଅଥ ଭଗନ୍ଦର ରୋଗେ ।

ଚିତ୍ରାମର୍ଷଭବୋପସର୍ଗଶମନେ ! ସ୍ୱେରାନନେ ! ଲଙ୍ଗ ନେତ୍ରଂ
ହତ୍ୱା ସ୍ୱରଗୃହୂତେଳକୁଣନେ ! ନେତ୍ରଂ ବଧେହ ଧ୍ରୁବଂ ।
ସଂଘୃଷ୍ଟାତ୍ରି ଫଳାମ୍ବୁନାଶ୍ୱଜନ୍ତତାନ୍ ମାର୍ଜାରଜାତାଚ ବା
ସର୍ବୈାବପ୍ରବରେ ଭଗନ୍ଦରଗଦୋଽଘ୍ନଃ ପ୍ରାଡ଼୍ଭବେତ୍ଛାନ୍ତସକ୍ । ୧୯ ।

**ଭାଷାର୍ଥ**—ଅନନ୍ତର ଭଗନ୍ଦରରୋଗ ଚକିତ୍ସା । ହେ ସ୍ୱେରନନେ ! ହେ ହରିଦ୍ଧେନକୁରଙ୍ଗେ ! ଆଲିଙ୍ଗନ କର । ଏହା ନ୍ୟୂନେ ବୋଲି ସନ୍ଦେହ ନାହିଁ । ଯଦି ହେଲେ ପ୍ରୟୋଗ କର । ହେ ପ୍ରିୟେ ! ଭଗନ୍ଦର ରୋଗରେ କୁକ୍କୁର ଅସ୍ଥି ଜମ୍ବୁ ବରାଡ ଅସ୍ଥିକୁ ତ୍ରିଫଳା ପାଣିରେ ଘୋରି ଭଗନ୍ଦର ସ୍ଥାନରେ ଲଗାଇଲେ ତାହା ଭଲ ହୋଇଯାଏ; ଏହା ଅସମ୍ଭବ ବୋଲି ମନେ ନ କରି ଥରେ ହେଲେ ପରୀକ୍ଷା କର ।

## ଅଥୋପଦଂଶେ ।

କୋକନୟଣବଶୀକୃତବନ୍ଦେ ! ଲେପନାକ୍ତସ୍ୱୃତ ସତ୍ୱର ମୃଷ୍ଟଂ ।
କ୍ଷାପୁରଂ ଫଳମଥାଖୁଭୃଗସ୍ଥି ମେଢ୍ରଜଂ ଚବ ଦୋପମ-ଚର୍ମ । ୨୦ ।

**ଭାଷାର୍ଥ**—ଅନନ୍ତର ଉପଦଂଶ ରୋଗ ଚକିତ୍ସା । ଦୃଷ୍ଟି ଦ୍ୱାରା ତୁମ୍ଭେ ସମସ୍ତ ଲୋକଙ୍କୁ ବଶୀଭୂତ କରୁଅଛ ହେ କାନ୍ତେ ! ତୁମ୍ଭ ମେଢ୍ରଜ ରୋଗ ( ଉପଦଂଶ ରୋଗରେ ) କ୍ଷାପୁର ଫଳ ( ଗୁଆ ), ଏବଂ ଆଖୁଭୃକ୍ ଅସ୍ଥି ( ବରାଡ ହାଡ଼ ) ଜମ୍ବୁ ତୁମ୍ବ ଦନ୍ତଦୂଷ୍ଟି ଦାଡ଼ିମଫଳ ଛେଲିକୁ ପାଣିରେ ଘୋରି ଉପଦଂଶ ସ୍ଥାନରେ ଲେପ ଦେଲେ ସେହି ରୋଗ ବିନଷ୍ଟ ହୁଏ । ୨୦ ।

## ଅଥ କୁଷ୍ଠେ ।

କୁଷ୍ଠକଷ୍ଟହରଣାୟ ସମର୍ଥୋଽରଷ୍ଟ ପଞ୍ଚବସ୍ତୁବୋଦ୍ଭ ପରାଗଃ ।
କ୍ଷୌଦ୍ରପୋଘୃତଯୁତୋ ନଳିନାକ୍ଷେ !ଽବଲ୍ଗୁଜୋଽପି ବଧନା ସୁଖଦଃ ସ୍ୟାତ୍ ॥

**ଭାଷାର୍ଥ**—ଅନନ୍ତର କୁଷ୍ଠରୋଗ ଚକିତ୍ସା । ହେ ପଦ୍ମନେତ୍ରେ ! ଅରଷ୍ଟ-ପଞ୍ଚାବସ୍ଥିତ ଅର୍ଥାତ୍ ନିମ୍ବଗଛର ଛେଲି, ମୂଳ, ପତ୍ର, ଫଳ ଓ ଫୁଲ ଏମାନଙ୍କର ଚୂର୍ଣ୍ଣ ଏବଂ ଅବଲ୍ଗୁଚ ( ବାକୁଚ, ଚୂର୍ଣ୍ଣ )

ମଧୁ ଓ ଘିଅ ସହିତ ଅର୍ଦ୍ଧତୋଳା ପରିମାଣରେ ପ୍ରତ୍ୟହ ସେବନ କଲେ କଷ୍ଟକର କୁଷ୍ଠରୋଗ ବିନଷ୍ଟ ହୁଏ । ୨୧ ।

## ଅଥ କୋଠେ ।

ଅରିଷ୍ଟପତ୍ରଂ ସଘୃତଂ ସମାକ୍ଷ୍ମ କୋଠାଦିକଂ ହନ୍ତ୍ୟଚିରେଣ କାନ୍ତେ !
ଦୂର୍ବାନିଶାଭ୍ୟାମପି ଲେପନାଦ୍ୱାପ୍ୟୁଦ୍ୱର୍ତ୍ତନାଦ୍ଧୋକଜକଣ୍ଠକଣ୍ଠେ ! ।୨୨।

**ଭାଷାର୍ଥ**—ଅନନ୍ତର କୋଠ ରୋଗ ଚିକିତ୍ସା । ହେ କୋକିଳସ୍ୱରେ ! ହେ କାନ୍ତେ ! ଅରିଷ୍ଟପତ୍ର ( ନିମ୍ବପତ୍ର ) ର ଚୂର୍ଣ୍ଣ, ସଘୃତ ( ଘିଅ-ସହିତ ), ସମାକ୍ଷ ( ଅଁଳା ଚୂର୍ଣ୍ଣ ସହିତ ) ସେବନ କଲେ କୋଠାଦି ରୋଗ ଶୀଘ୍ର ପ୍ରଶମିତ ହୁଏ । ଆଉ ମଧ୍ୟ ଦୂର୍ବା-ନିଶା (ଦୂବ ଓ ହଳଦୀ) ବାଟି ଲେପ ଦେଲେ କିମ୍ବା ବୋଳି ହୋଇ ଘୋଷି ହେଲେ ଉକ୍ତ ରୋଗ ବିନଷ୍ଟ ହୁଏ । ୨୨ ।

## ଅଥାମ୍ଳପିତ୍ତେ ।

ଧାନ୍ୟାକଶୁଣ୍ଠୀ ପିଚୁମର୍ଦ୍ଦଧାତ୍ରୀ-ପଥ୍ୟାରଜୋ ମାକ୍ଷିକ ସମ୍ପ୍ରଯୁକ୍ତଂ ।
ହନ୍ତ୍ୟମ୍ଳପିତ୍ତଂ ବହୁଭିଃ ପ୍ରୟୋଗୈଃ କିଂ କ୍ଷୀଣଶୌରୈରପି ସୁପ୍ରତୀକେ ! ।୨୩

**ଭାଷାର୍ଥ**—ଅନନ୍ତର ଅମ୍ଳପିତ୍ତ ରୋଗ ଚିକିତ୍ସା । ହେ ଶୋଭନାଙ୍ଗି ! ଧାନ୍ୟାକ (ଧନିଆ), ଶୁଣ୍ଠୀ, ପିଚୁମର୍ଦ୍ଦ (ନିମ୍ବ), ଧାତ୍ରୀ (ଅଁଳା), ପଥ୍ୟା (ହରିଡ଼ା) ଏମାନଙ୍କର ଚୂର୍ଣ୍ଣରୁ ଅର୍ଦ୍ଧତୋଳା ମଧୁ ସହିତ ସେବନ କଲେ ଅମ୍ଳପିତ୍ତ ରୋଗ ନଷ୍ଟ ହୁଏ । ଅନ୍ୟ ପ୍ରୟୋଗରେ ପ୍ରୟୋଜନ ନାହିଁ । ୨୩ ।

## ପୁନଃ ।

ସିତାଜିବୃନ୍ଦାରଧ ଦେବପୁଷ୍ପୈଃ ପ୍ରବର୍ଦ୍ଧିପୈରୁହିତଃ ପର୍ଣ୍ଣଶୈଃ ।
ଜନୈର୍ନିପୀତୋ ବିବିଧପ୍ରକାରେ ହରେଦ୍ଧ କାନ୍ତେଽମ୍ଳ ! ଦନ୍ତୁପିତ୍ତେ ।୨୪

**ଭାଷାର୍ଥ**—ଅୟି କାନ୍ତେ ! ଆଜୀର୍ଣ୍ଣ ଅତିସାରରେ ବିଲ୍ଵ (କଢ) ଏକଭାଗ, ତ୍ରିବୃତ୍ତ ( ତନ୍ତୁଜ ) ଦୁଇଭାଗ, ମାଗଧ ( ପିପ୍ପଳି ) ତିନଭାଗ, ଦେବପୁଷ୍ପ ( ଲବଙ୍ଗ ) ଚାରିଭାଗ, ଏମାନଙ୍କ ଚୂର୍ଣ୍ଣ କରି ଅର୍ଦ୍ଧତୋଳା ପରିମାଣରେ ଜଳସହିତ ପାନକଲେ ନାନାପ୍ରକାର ଅନୁପିତ୍ତ ରୋଗ ନଷ୍ଟହୁଏ । ୨୪ ।

## ଅଥ ବିସର୍ପାଦି ରୋଗେ ।

ତଗ୍ରଷପାଠସ୍ତି ପଟୋଳ ବାସା ସୁଧାଗୁଡୂଚୀ ଖଦିରୈ ର୍ବିଧେୟଂ ।
ସପାଚନଂ ତତ୍ତୁ ସକଳାନ୍ ବିସର୍ପାନ୍ କୃଶୋଦରି ! ପ୍ରାକ୍ ଶମୟତ୍ୟଶେଷଂ ।୨୫।

**ଭାଷାର୍ଥ**—ଅନନ୍ତର ବିସର୍ପାଦି ରୋଗ କହନ୍ତି । ହେ କୃଶୋଦରି ! ତଗ୍ର [ ହରିଡ଼ା, ବାହାଡ଼ା, ଅଁଳା ], ଷପା [ ହଳଦୀ ], ଯଷ୍ଟି [ ଯାଠିମଧୁ ], ପଟୋଳ, ବାସା [ ବାସଙ୍ଗ ], ସୁଧା (ଗୁଳୁଚୀ) ଗୁଡୂଚୀ [ ଗୁଳୁଚ ], ଖଦିର ଏମାନଙ୍କର ପାଚନ ସକଳ ପ୍ରକାର ବିଷରୋଗକୁ ନାଶକରେ । ୨୫ ।

### ପୁନଃ ।

ଶିରୀଷ ହିଂସ୍ରାବିଶ୍ୱକେଶରୈସ୍ତୁ ବିଲେପନଂ ହନ୍ତି ବିସର୍ପମୋକ୍ଷାନ୍ ।
ଯଥା କୁପୁତ୍ରଃ ସ୍ୱକୁଳଂ ମହତ୍ତ୍ୱ ସମାଗମୋ ବାରବିଳାସିନୀନାଂ ।୨୬।

**ଭାଷାର୍ଥ**--ଅରି ମଧ୍ୟ ବାରବିଳାସିନୀ ( ବେଶ୍ୟା ) ସମାଗମ ମହତ୍ତ୍ୱକୁ ଏବଂ କୁପୁତ୍ର ନିଜକୁଳକୁ ଯେପରି ନଷ୍ଟକରେ, ସେହିପରି ମଧ୍ୟ ଶିରୀଷ, ହିଂସ୍ରା ( ଜଟାମାଂସୀ ), ଅରିଷ୍ଟ ( ବେଣାଚେର ), କେଶର ( ନାଗକେଶର ), ଏମାନଙ୍କ ଲେପ ବିସର୍ପ ପ୍ରଭୃତି ରୋଗକୁ ବିନାଶ କରେ । ୨୬ ।

## ଅଥ ମୁଖରୋଗେ ।

ଘନାଂଶଦେବସୁମନଃସୁମନଃ ପ୍ରବାଳ—
କକ୍କୋଳପୂଗମଧୁକାଖଦିରୈଣନାଭି ।
ଏତୈର୍ବଟୀ ଫଳସୃତେ ଖଲୁ ବକ୍ତ୍ରରୋଗଂ
ଖାଦ୍ୟକଣମ୍ୟରକୃତା ଶୃଣୁ ପଙ୍କଜାକ୍ଷି ! । ୧୮ ।

**ଭାଷାର୍ଥ**—ଅନନ୍ତର ମୁଖରୋଗ ଚକିତ୍ସା । ହେ ପଙ୍କଜାକ୍ଷି ! ଘନାଂଶ ( କର୍ପୂର ), ଦେବସୁମନ ( ଲବଙ୍ଗ ), ସୁମନଃପ୍ରବାଳ ( ଜାଇପତ୍ର ), କକ୍କୋଳ, ପୂଗ ( ଗୁଆ ), ମଧୁକା ( ଯାଠିମଧୁ ), ଖଦିର ( ଖଇର ), ଏଣନାଭି [ କସ୍ତୁରୀ ] ଏମାନଙ୍କୁ ଜାଇଫଳ କ୍ୱାଥରେ ବଟିକା ପ୍ରସ୍ତୁତ କରି ବ୍ୟବହାର କଲେ ମୁଖରୋଗ ପରାଜିତ ହୁଏ । ୧୭ ।

## ଅଥ ନାସାରୋଗେ ।

ହେ ସ୍ୱର୍ଣ୍ଣକେତକଜଡସ୍ୱରୁଚେ ! ସୁଶୀଳେ !
ଘୋଣାମୟଂ ଜୟତି ତୈଳମିଦଂ ହିପକ୍ୱଂ ।
ହିଙ୍ଗୁତ୍ଥ ଦାରୁ ମଗଧୀ କୃମିବସୂଚ୍ୟ ଖଜୈ—
ଲକ୍ଷ୍ମାବଲେଖନଜଡାଖିଳଲୋକଚତୁରେ ! । ୧୮ ।

**ଭାଷାର୍ଥ**—ଅତଃପର ନାସାରୋଗ ବିଷୟରେ ଚକିତ୍ସା । ହେ ସ୍ୱର୍ଣ୍ଣକେତକୀବର୍ଣ୍ଣେ ! ସୁଶୀଳେ ! ହେ କଟାକ୍ଷପାତଜଡ଼ଲୋକଚତୁରେ ! ହିଙ୍ଗୁତ୍ଥ [ ସୈନ୍ଧବ ଲୁଣ ], ଦାରୁ [ ଦେବଦାରୁ ], ମଗଧୀ [ ପିପ୍ପଳୀ ], କୃମିବସୂଚ୍ୟଖଜ [ ବଡ଼ଙ୍ଗ ଗୁଣ୍ଡ ], ଏ ସବୁର କଳ୍କଦ୍ୱାରେ ପରିପକ୍ୱ ତୈଳ ନସ୍ୟ ରୂପରେ ଗ୍ରହଣ କଲେ ଘୋଣାମୟ [ ନାସାରୋଗ ] କୁ ପରାସ୍ତ କରେ । ୧୮ ।

## ନେତ୍ରରୋଗେ ଚନ୍ଦ୍ରୋଦୟ ବର୍ତ୍ତିମାହ ।

ଶିଳାକମ୍ବୋର୍ନାଭିମଗଧତନୂଜା ହୈମବତକା--
ମତ୍ୟୋଗ୍ରା କୃଷ୍ଣାକ୍ଷୈଃ ସୁମୁଖି ! ବଟିକା ବସ୍ତପୟସା ।
ଜୟେନ୍ନେତ୍ରାତଙ୍କଂ ସହିତ ମୁପସର୍ଗୈଃ ପ୍ରିୟତମେ !
ତମିସ୍ରୌଘଂ ଯଦ୍ୱଦ୍ଦ୍ୱିଜଜନସମସ୍ତେ ଭେଷ ଉଦିତଃ । ୨୯ ।

**ଭାଷାର୍ଥ**—ନେତ୍ରରୋଗରେ ଚନ୍ଦ୍ରୋଦୟବର୍ତ୍ତୀ । ହେ ସୁମୁଖି ! ହେ ପ୍ରିୟତମେ ! ଶିଳା [ମନଃଶିଳା], କମ୍ବୋର୍ନାଭି [ଶଙ୍ଖନାଭି], ମଗଧତନୂଜା [ପିପ୍ପଳୀ], ହୈମବତକା [ହରିଡ଼ା], ଆମୟ [କୁଡ଼], ଉଗ୍ରା ( ବଚ ), କୃଷ୍ଣ [ମରିଚ], ଅକ୍ଷ [ବାହାଡ଼ା ମଞ୍ଜି] ଏ ସମସ୍ତ ସମଭାଗରେ ଆଣି ଛେଳି ଦୁଧରେ ପେଷଣ କରି ବର୍ତ୍ତୀ ପ୍ରସ୍ତୁତ କରିବ । ଏହି ବର୍ତ୍ତୀକୁ ମହୁରେ ଘୋରି ଅଞ୍ଜନ ପରି ଚକ୍ଷୁରେ ଲଗାଇଲେ ରାତିରେ ଚନ୍ଦ୍ର ଉଦିତ ହୋଇ ଘୋର ଅନ୍ଧକାରକୁ ଯେପରି ଧ୍ୱଂସ-କରେ, ନେତ୍ରରୋଗକୁ ଏହା ସେହିପରି ବିନାଶ କରେ ।

## ଅଥ ଶିରୋରୋଗେ ।

ଜନିତ ନସ୍ୟବିଧି ଗୁଡ଼ନାଗରୈଃ ଶିରଗଦଂ ପରିପେଷଣ ଜାତନୌ ।
ଅପି ଚ ମାଗଧକାଣ୍ଠବସମ୍ଭବୌ ଶିରଗଦଂ ପରିପେଷଣ ଜାତନୌ ।୩୦।

**ଭାଷାର୍ଥ**—ଅନନ୍ତର ଶିରରୋଗ ଚିକିତ୍ସା । ଗୁଡ଼ନାଗର [ପୁରୁଣାଗୁଡ଼ ଓ ଶୁଣ୍ଠି] ଏ ଦୁହିଙ୍କ ଦ୍ୱାରା ପ୍ରସ୍ତୁତ ନସ୍ୟ ଏବଂ ମାଗଧକାଣ୍ଠବ-ସମ୍ଭବ ( ପିପ୍ପଳୀ ତଣ୍ଡୁଳ ଓ ସୈନ୍ଧବ ଲୁଣ ] ଏମାନଙ୍କ ଦ୍ୱାରା ପ୍ରସ୍ତୁତ ନସ୍ୟ ଗ୍ରହଣ କଲେ ଶିରରୋଗ ଶାନ୍ତ ହୁଏ । ୩୦ ।

## ଅଥ ସ୍ତ୍ରୀରୋଗେ ।

ଜାତୀକେଶର କୁଷ୍ଠଯଷ୍ଟି ମଧୂସ୍ର ଲକ୍ଷ୍ମୀଫଳୈର୍ଗ୍ରନ୍ଥ୍ୟମ୍ବୁକ୍-
ସେବ୍ୟାବ୍ଦାମୃତବଲ୍ଲିକୈବର୍ତ୍ତଶଟୀ କଞ୍ଜ ତ୍ରିକତ୍ରି ବୃଷୈଃ ।
ମେଥୀ ସର୍ବସମା ସମାକ୍ଷିତହିତା ମଧ୍ୱାଜ୍ୟ ପିଣ୍ଡୀକୃତା
ସ୍ୟାଦେଷା ପ୍ରମଦାମୟୋଘହରଣେ କାନ୍ତେ ! ତ୍ୱୟା ସେବ୍ୟତାଂ ।୩୧।

**ଭାଷାର୍ଥ**—ଅନନ୍ତର ସ୍ତ୍ରୀରୋଗ ଚିକିତ୍ସା ଅର୍ଥାତ୍ ମେଥୀମୋଦକ । ଜାତୀ ( ଜାଇପତ୍ରୀ ), ଚମ୍ପକ ( ନାଗେଶ୍ୱର ), କୁଷ୍ଠ ( କୁଡ଼ ), ଯଷ୍ଟି ( ଯଷ୍ଟିମଧୁ ), ମଧୂସ୍ର ( ପାନମହୁଲ ), ଲକ୍ଷ୍ମୀ (ଲବଙ୍ଗ), ଫଳ ( ଜାଇଫଳ ), ଗ୍ରନ୍ଥ୍ୟମ୍ବୁକ୍ ( ଖସ ଓ କଳାଖସ, ବଣଯୁଆଣୀ ଓ ଯୁଆଣୀ ), ସେବ୍ୟ ( ବେଣାଚେର ), ଅବ୍ଦ ( ମୁଥା ), ଅମୃତ ବଲ୍ଲୀ ( ଗୁଳୁଚୀସାର ), କୈବର୍ତ୍ତ [ ଶାଳୋପୃକ ], ଶଟୀ ( ଗନ୍ଧଶୁଣ୍ଠୀ ), କଞ୍ଜ ( ପଦ୍ମକନ୍ଦ ), ତ୍ରିକତ୍ରି ( ତ୍ରିକଟୁ=ଶୁଣ୍ଠୀ, ପିପ୍ପଳୀ, ମରିଚ; ତ୍ରିଫଳା= ହରିଡ଼ା, ବାହାଡ଼ା, ଅଁଳା; ତ୍ରିସୁଗନ୍ଧ=ଡାଳଚିନି, ଅଳେଇଚ ତେଜପତ୍ର ), ବୃଷ [ ବାସଙ୍ଗ ], ଏ ସମସ୍ତଙ୍କ ସମାନ ମେଥୀ ଏବଂ ଏମାନଙ୍କ ସମଷ୍ଟିର ତିନ ଦେବ । ଏମାନଙ୍କୁ ମହୁ ଓ ଘିଅ ସହିତ ମୋଦକ କରି ସମସ୍ତ ସ୍ତ୍ରୀରୋଗରେ ପ୍ରୟୋଗ କରଯାଏ । ହେ ପ୍ରିୟତମେ ! ତୁମ୍ଭେ ଏହା ସେବନ କର । ୩୧ ।

## ଅଥ ବାଳରୋଗେ ।

ଲଜାଶ୍ରୀଫଳନାଗଫେନଖଦିର ନ୍ୟଗ୍ରୋଧଗନ୍ଧାମ୍ବୁମୁକ୍—
ଗ୍ରନ୍ଥ୍ୟଶ୍ରୀପୁମକୋଃତସୀ ତ୍ରିକଟୁକା ଧାନ୍ୟାକଶ୍ୱମୈସ୍ତୁକୈଃ ।
ଚୂର୍ଣ୍ଣଂ ଶାରଦପର୍ବତେସ୍ମଲଦଳେ ! ଜାଜାତଧାନ୍ ନାଶୟେତ୍
ବାଳାନାଂ ଗଦଦଳ [illegible] ! ଶ୍ରୀ କୈବିଦ୍ୟଗଜୋଦିତଂ । ୩୨ !

**ଭାଷାର୍ଥ**—ଅନନ୍ତର ବାଳରୋଗ ଚିକିତ୍ସା । ହେ ଶରତ୍‌ପୂର୍ଣ୍ଣଚନ୍ଦ୍ରବଦନେ ! ହେ ପ୍ରିୟତମେ ! ବୈଦ୍ୟରାଜ କହୁଅଛନ୍ତି, ଲଜା ( ଲଥା ), ଶ୍ରୀଫଳ [ବେଲ], ନାଗଫେନ (ଅଫିମ), ଖଦିର, ଜଟି [ଗୁଜୁରାତ], ଉଗ୍ରଗନ୍ଧା [ବଚ], ଅମ୍ବୁମୁକ୍ [ମୁଥା], ଘଟ୍ୟ (ଘୁଆଣୀ ଓ ଜାର), ଶ୍ରୀପୁଷ୍ପକ [ ଲବଙ୍ଗ ], ଅତସୀ, ଜିବନ୍ତିକା ( ଶୁଣ୍ଠୀ, ପିପ୍ପଳୀ, ମରିଚ ), ଧାନ୍ୟାକ [ ଧନିଆ ], ସ୍ୱର୍ଣ୍ଣମୈଷ୍ୟକ ( ନାଗକେଶର ) ଏମାନଙ୍କ ଦ୍ୱାରା ପ୍ରସ୍ତୁତ ଚୂର୍ଣ୍ଣ ସମସ୍ତପ୍ରକାର ବାଳରୋଗମାନଙ୍କୁ ବିନାଶ କରେ ।

## ଅଥ ବିଷରୋଗେ ।

ନ ସ୍ୟାତ୍‌ସ୍ଥାବର ଜଙ୍ଗମଂ ଗରଭୟଂ ମେଷସ୍ଥିତେ ଖ୍ୱସ୍ଥରେ
ଭୁକ୍ତେ ନିମ୍ବଦଳେ ମସୂର ସହିତେ ବର୍ଷାବଧି ପ୍ରାକ୍ ପ୍ରିୟେ ! ।
ଟଙ୍କ ବା ପୟସା ତଥାର୍କଜନ୍ମଂ ପୀତଂ ଚ କାବ୍ୟେ ଦଳେ
ତୋଷ୍ଟୈସ୍ତଣ୍ଡୁଳସମ୍ଭବୈଃ ଶ୍ୱେତପୁଷ୍ପିକାପି କର୍କୋଟକୀ । ୩୩ ।

**ଭାଷାର୍ଥ**—ଅନନ୍ତର ବିଷରୋଗ-ଚିକିତ୍ସା । ହେ ପ୍ରିୟେ ! ମେଷରାଶିରେ ସୂର୍ଯ୍ୟ ଥିବା ସମୟରୁ ଆରମ୍ଭକରି ବର୍ଷେକାଳ ମସୂର ଓ ନିମ୍ବପତ୍ର ଖାଇଲେ ସ୍ଥାବର ଜଙ୍ଗମ ସକଳ ପ୍ରକାର ବିଷ-ରୋଗ ଭୟ ଥାଏ ନାହିଁ । ଜଳସହିତ ଟାଙ୍ଗଣାଖଇ ଖାଇଲେ ମଧ୍ୟ ଉକ୍ତ ବିଷଭୟ ନ ଥାଏ । କାବ୍ୟଦିନେ [ ଶୁକ୍ରବାରେ ] ଅର୍କଜନ୍ମ [ ଶ୍ୱେତ ଅର୍କମୂଳ ], ଚାଉଳଧୁଆ ପାଣିରେ ପାନ କଲେ ବିଷଦୋଷ ଭୟ ରହେନାହିଁ । ଅଉମଧ୍ୟ ଶ୍ୱେତପୁଷ୍ପିକା ( ଶ୍ୱେତପୁନ୍ଦୁଣୀ ), ଅଥବା ତନ୍ଦ୍ରା [ ଇନ୍ଦ୍ରବାରୁଣୀମୂଳ ] କିମ୍ବା କର୍କୋଟକୀ, ଏମାନେ ମଧ୍ୟ ବ୍ୟବହୃତ ହେଲେ ସର୍ବବିଧ ବିଷଦୋଷ ନଷ୍ଟ ହୁଏ । ୩୩ ।

## ଗ୍ରନ୍ଥ ସଂଗ୍ରହମାହ ।

ଇତ୍ୟେବଂ ବହୁଶାତକୁକ୍ଷି ! ଗଦିତଂ ଜୂର୍ଣ୍ଣ୍ୟାଦିକାଦ୍ୟା ଭୂଦିଷି
ରୋଗାଣାଂ ନିଗମେଷୁ ତତ୍ର ସୁଗମଂ କିଞ୍ଚିନ୍ମୟୋକ୍ତଂ ତବ ।
ଚୈକସ୍ୟଂ କମଳେକ୍ଷଣେ ! କବିତସ୍ୟ ଅଗ୍ୟା ବୁଧାଃ କ୍ଷମ୍ୟତାଂ
ବୈଦ୍ୟା ମନ୍ନୃତକୌତୁକପ୍ରକରଣେ ଦୋଷୋ ମହାନ୍ତୋଽଜଣଂ ।୩୪।

**ଭାଷାର୍ଥ**—ଗ୍ରନ୍ଥ ପରିସମାପ୍ତି ବିଷୟକୁ ଅଭିଲକ୍ଷ୍ୟ କରି କବି କହୁଅଛନ୍ତି । ହେ କୃଶୋଦରି ! ହେ କମଳେକ୍ଷଣେ ! ପଣ୍ଡିତମାନେ ଶାସ୍ତ୍ରମାନଙ୍କରେ ଜ୍ୱରରୋଗଠାରୁ ଆରମ୍ଭ କରି ବିଷରୋଗ ପର୍ଯ୍ୟନ୍ତ ରୋଗମାନଙ୍କ ସମ୍ବନ୍ଧରେ ନାନା ଚିକିତ୍ସା ବିଷୟମାନ କହିଅଛନ୍ତି; କିନ୍ତୁ ତନ୍ମଧ୍ୟରୁ ଏବଂବିଧ କିଞ୍ଚିତ୍ ଚିକିତ୍ସା ବିଷୟ ଆମ୍ଭେ ତୁମ୍ଭ ନିକଟରେ ପ୍ରକାଶ କଲୁଁ । ଅତଏବ ହେ-ପଣ୍ଡିତ, କବିଶ୍ରେଷ୍ଠ, ପୁନଶ୍ଚ ହେ ବୈଦ୍ୟସ୍ୱଜନମାନେ ! ଆପଣମାନଙ୍କ ନିକଟରେ ଏହି ନିବେଦନ ଯେ, ଆମ୍ଭକୃତ ଏହି କୌତୁକ ଘଟକ କାବ୍ୟରେ ଯାହା କିଛି ଦୋଷ ଥାଏ, ତାହା ନିଜ ଗୁଣରେ କ୍ଷମା କରିବା ହେଉନ୍ତୁ । ୩୪ ।

ଯେଽରଣ୍ୟାଃ ଖିଳବୈଦ୍ୟ ତନ୍ତ୍ରଗମିତସ୍ତାନ୍ତା ନମଃ ସର୍ବଦା
ଯେଽପ୍ୟସ୍ମିନ୍ମନ୍ଦୋଜନଃ ପ୍ରମୁଦିତା ଲୋକୋପକାରେଷ୍ୱଭାଃ ।
ତେଭ୍ୟଃ ଶ୍ରୀ କବିରାଜରାଜରଞ୍ଜନା ନାରାୟଣସ୍ୟାନିଶଂ
ପ୍ରାପ୍ତଂ ପାଦ୍ରବଂ ପ୍ରିୟାପୁଜିପିତଂ ସଦ୍‌ବୈଦ୍ୟହର୍ଷାକୃତୌ । ୩୫ ।

**ଭାଷାର୍ଥ**—ଗ୍ରନ୍ଥ ସମାପ୍ତିରେ କବିଙ୍କର ପ୍ରାର୍ଥନା ଏବଂ ବିନୟପ୍ରକାଶ । ଯେଉଁ ବୈଦ୍ୟମାନେ ଅପ୍ରହତ ବୈଦ୍ୟଶାସ୍ତ୍ରମାନଙ୍କରେ ନିଜ-ବୁଦ୍ଧି ପ୍ରବେଶ କରାଇଅଛନ୍ତି, ଆଉ ଯେଉଁମାନେ ଲୋକମାନଙ୍କ ଉପକାର ବିଷୟରେ ଉତ୍ସୁକ ଏବଂ ଆନନ୍ଦିତ

ହୋଇ ଆମ୍ଭର ଏହି ପରିଶ୍ରମକୁ ଦେଖୁଅଛନ୍ତି, ସେହି ଭଉରାଜ ଏବଂ ରାଜବୈଦ୍ୟମାନଙ୍କୁ ଏହି ଶ୍ରୀ ନାରାୟଣ-ଷଡ଼ଙ୍ଗୀଙ୍କର [ ଆମ୍ଭର ] ସ୍ୱକୃତା ନମସ୍କାର । ସଦ୍‌ବୈଦ୍ୟ-ମାନଙ୍କ ହର୍ଷ-ଉତ୍ପାଦକ ପ୍ରିୟୋକ୍ତି ସମ୍ବଳିତ ଆମ୍ଭର ଏହି କାବ୍ୟ ବର୍ତ୍ତମାନ ସମାପ୍ତ ହେଲା । ୩୫ ।

ଇତି ଶ୍ରୀ ଦ୍ୱିଜନାରାୟଣ ଷଡ଼ଙ୍ଗୀ-କୃତେ କୌତୁକ-ଦର୍ପଣେ କାବ୍ୟେ
ଷଷ୍ଠଃ ସର୍ଗଃ । ହରିଃ ଓଁ ସେତୁ ।

ସମାପ୍ତୋଽୟଂ ଗ୍ରନ୍ଥଃ ।

ଶ୍ରୀକୃଷ୍ଣାର୍ପଣମସ୍ତୁ ।



# ପରିଶିଷ୍ଟ ।



## ପାରଦ ଶୋଧନ ବିଧି ।

ପ୍ରସ୍ତର ଖଲରେ ପାରା ରଖି ରସୁଣର ସ୍ୱରସ ଦ୍ୱାରା ସେହି ପାରାକୁ କିଛି ସମୟ ମର୍ଦ୍ଦନ କରିବ । ତତ୍ପରେ ଖରାରେ ଏହାକୁ ଶୁଖାଇ ବସ୍ତ୍ରରେ ଛାଣି ପାନରସରେ ଏହି ପାରାକୁ ପୁନର୍ବାର ମର୍ଦ୍ଦନ କରିବ । ତତ୍ପରେ ପୂର୍ବପରି ଖରାରେ ଶୁଖାଇ ବସ୍ତ୍ରରେ ଛାଣି ନେବ ଅଥବା ପାନ ଓ ରସୁଣର ସ୍ୱରସ ଏକତ୍ର କରି ତଦ୍ୱାରା ପାରାକୁ ଖରାରେ ଭାବନା ଦେଇ ସେହି ରସ ଶୁଖିଗଲେ, ଜଳରେ ଧୌତ କରି ବସ୍ତ୍ରଖଣ୍ଡ ଦ୍ୱାରା ଛାଣି ନେବ । ଏହିପରି ପାରା ଶୋଧନ କରାଯାଏ ।

## ଗନ୍ଧକ ଶୋଧନ ବିଧି ।

ଗୋଟିଏ ଲୌହ କରଚୁଲିରେ କିଞ୍ଚିତ ଘୃତ ଢାଳି ଅଗ୍ନିରେ ଉତ୍ତପ୍ତ କରି ସେଥିରେ ଗନ୍ଧକ ପକାଇବ । ଏବଂ ଗନ୍ଧକ ତରଳ ଗଲେ ଏହାକୁ ଦୁଗ୍ଧରେ ନିକ୍ଷେପ କରିବ । ତତ୍ପରେ ଏହି ଦୁଗ୍ଧନିକ୍ଷିପ୍ତ ଗନ୍ଧକକୁ ଜଳରେ ଧୌତକରି ଶୁଖାଇ ନେଲେ ଏହା ବିଶୋଧିତ ହୁଏ ।

## ତାମ୍ର ଶୋଧନ ବିଧି ।

ତାମ୍ରକୁ ପିଟି ପତ୍ର ପ୍ରାୟ କରି ଗୋମୂତ୍ର ସହିତ ଏକ ପ୍ରହର ତୀବ୍ରାଗ୍ନିରେ ପାକ କଲେ ତାମ୍ର ଦୋଷବିହୀନ ଓ ଶୋଧିତ ହୁଏ ।

## ବୃଦ୍ଧଦାରକ ଶୋଧନ ବିଧି ।

ବୃଦ୍ଧଦାରକ ବୀଜଗୁଡ଼ିକୁ ବସ୍ତ୍ରଖଣ୍ଡରେ ବାନ୍ଧି ଗୋଟିଏ ଗୋଦୁଗ୍ଧପୂର୍ଣ୍ଣ ପାତ୍ରରେ ଝୁଲାଇ ତଳେ ଅଗ୍ନିତାପ ପ୍ରଦାନ କରିବ । ଏହାପରେ ଦୁଇଘଣ୍ଟା-କାଳ ଗୋଦୁଗ୍ଧସହ ପାକ କରି ଜଳରେ ଧୌତପୂର୍ବକ ଖରାରେ ଶୁଖାଇଲେ ବୃଦ୍ଧଦାରକବୀଜ ଶୋଧିତ ହୁଏ ।

## ଭାଲିଆ-ଶୋଧନ ବିଧି ।

ସୁପକ୍ୱ ଭାଲିଆକୁ ଜଳରେ ନିକ୍ଷେପ କଲେ ଯେଉଁଗୁଡ଼ିକ ଜଳରେ ବୁଡ଼ିଯାଏ, ସେହି ଗୁଡ଼ିକ ଶୋଧନ ଯୋଗ୍ୟ । ଏହାପରି ଶୋଧନଯୋଗ୍ୟ ଭାଲିଆଗୁଡ଼ିକୁ ଇଷ୍ଟକଚୂର୍ଣ୍ଣ ଦ୍ୱାରା ଘର୍ଷଣ କରି ଧୋଇ ଦେଲେ ଏହା ବିଶୋଧିତ ହୁଏ । ଶୋଧନ କଲାବେଳେ ବିଶେଷ ସାବଧାନ ହେବ ।

## ସ୍ୱରସ ।

ଖଣ୍ଡାଦିଦ୍ୱାରା ଅବିକ୍ଷିତ ସରସ ଉଦ୍ଭିଦ ଭୂମିରୁ ଉଦ୍ଧୃତ କରି ଜଳରେ ଧୋଇ ପେଷଣ କରିବ । ତତ୍ପରେ ବସ୍ତ୍ର ବା ଯନ୍ତ୍ରାଦି ସାହାଯ୍ୟରେ ଏହି ଦ୍ରବ୍ୟର ରସ ବାହାର କରିବ । ଏହାହିଁ 'ସ୍ୱରସ' ନାମରେ ଅଭିହିତ ।

## ମୋଦକ ପାକ ବିଧି ।

ମୋଦକ ପାକ କରିବାକୁ ହେଲେ ସମସ୍ତ ଚୂର୍ଣ୍ଣର ଦ୍ୱିଗୁଣ ଇକ୍ଷୁଚିନି ଗ୍ରହଣ କରିବ । କିନ୍ତୁ ଯେଉଁ ସ୍ଥଳରେ ବିଶେଷ ବିଧାନ ଲେଖାଥିବ ସେହିସବୁ ସ୍ଥଳରେ ତାହା ସେହି ପରିମାଣରେ ଗ୍ରହଣ କରିବା କର୍ତ୍ତବ୍ୟ । ମୋଦକରେ ଚୂର୍ଣ୍ଣ ପରିମାଣ ଅଧିକ ହେଲେ ଚିନିକୁ ପ୍ରଥମେ ଅଳ୍ପ ଜଳ-ସହ ପାକକରି ତାହାର ରସ ଯଥାବିଧି ପାକ ହେବା ପୂର୍ବରୁ ଚୂର୍ଣ୍ଣାଦି ଉପରିଷ୍ଟିତ ରସ ମଧ୍ୟରେ ଚୂର୍ଣ୍ଣ ନିକ୍ଷେପ କରି ହତା ଦ୍ୱାରା ଆଲୋଡ଼ନ

କରିବ; କିନ୍ତୁ ମୋଦକରେ ଚୂର୍ଣ୍ଣ ପରିମାଣ ଅଳ୍ପ ଥିଲେ ଚିନିରେ ଅଳ୍ପଜଳ ଦେଇ ଯଥାବିଧି ରସ ପ୍ରସ୍ତୁତ କରି ଚୁଲ୍ଲୀରୁ ସେହି ପାତ୍ରଟିକୁ ଓହ୍ଲାଇ ଆଣିବ; ତଦନନ୍ତର ଏହି ଚିନିରସ ମଧ୍ୟରେ ସମସ୍ତ ଚୂର୍ଣ୍ଣ ନିକ୍ଷେପ କରି ହାତା ଦ୍ୱାରା ଚିନିରସରେ ଚୂର୍ଣ୍ଣ ସମ୍ୟକରୂପେ ମିଶ୍ରିତ ହେବା ପର୍ଯ୍ୟନ୍ତ ଦୃଢ଼ଭାବରେ ଆଲୋଡ଼ନ କରିବ । ଅନନ୍ତର ଶୀତଳ ହେଲେ ଏଥିରେ ଘୃତ ଓ ମଧୁ ମିଶ୍ରିତ କରି ରଖିବ ।

## ସ୍ନେହ ପାକ ବିଧି ।

ଘୃତ ବା ତୈଳ ଦୃଢ଼ କଟାହରେ ରଖି ମୃଦୁ ଅଗ୍ନିରେ ପାକ କରିବ ଏବଂ ସ୍ନେହ ଦ୍ରବ୍ୟ ( ତୈଳ ବା ଘୃତ ) ଫେଣରହିତ ହେଲେ ଏହାକୁ ଚୁଲ୍ଲୀରୁ ଓହ୍ଲାଇ ଆଣିବ । ଅନନ୍ତର କିଞ୍ଚିତ୍ ଶୀତଳ ହେଲେ ସ୍ନେହର ଚତୁର୍ଗୁଣ ଜଳ ସହିତ କୁଟ୍ଟିତ ମୂର୍ଚ୍ଛାଦ୍ରବ୍ୟ ଗୁଡିକ ଏଥିରେ ପକାଇ ଜାଳ ଦେବ । ମୂର୍ଚ୍ଛା ପାକ ଶେଷ ହେଲେ ସ୍ନେହଦ୍ରବ୍ୟ ପୁଣି ଏଥିରେ କଳ୍କଦ୍ରବ୍ୟ ପ୍ରଦାନ ପୂର୍ବକ ସ୍ନେହଦ୍ରବ୍ୟର ଚତୁର୍ଗୁଣ ଜଳସହ ପାକ କରିବ । ଅନନ୍ତର କିଞ୍ଚିତ୍ ଜଳ ଅବଶିଷ୍ଟ ଥାଉଁ ଥାଉଁ ଏହାକୁ ପୁଣି ଏଥିରେ କ୍ୱାଥ ପ୍ରଦାନ କରିବ ଏବଂ ତୈଳ ବା ଘୃତରେ ସ୍ୱରସ, ଦୁଗ୍ଧ ବା କାଞ୍ଜି ଦେବା ଉଲ୍ଲେଖ ଥିଲେ ତାହାକୁ କ୍ୱାଥର ପାକ ଶେଷ ନ ହେଉଣୁ ଅର୍ଥାତ୍ ଜଳୀୟାଂଶ ଅବଶିଷ୍ଟ ଥାଉଁ ଗୋଟି ଗୋଟି କରି ଯଥାକ୍ରମେ ତୈଳ ବା ଘୃତରେ ପ୍ରଦାନ କରିବ । ଗନ୍ଧପାକର ଉଲ୍ଲେଖ ଥିଲେ କଳ୍କଦ୍ରବ୍ୟ ପୁଣି, ଅଳ୍ପ ଜଳୀୟାଂଶ ଥାଉଁ ଗନ୍ଧଦ୍ରବ୍ୟ ଗୁଡିକ ପ୍ରଦାନ କରିବ । ଯେ ସ୍ଥଳରେ ଗନ୍ଧଦ୍ରବ୍ୟର ପରିମାଣ ଅଧିକ, ସେପରି ସ୍ଥଳରେ ଗନ୍ଧଦ୍ରବ୍ୟର କ୍ୱାଥ ପ୍ରସ୍ତୁତ କରି ସେହି କ୍ୱାଥ ଦ୍ୱାରା ଗନ୍ଧ ପାକ ସାଧନ କରିବ ।

ସ୍ନେହପାକ ସକାଶେ ଯେଉଁ ଚୁଲ୍ଲୀ ପ୍ରସ୍ତୁତ କରିବ ତାହାର ଦୁଇଟି କ୍ଷୁଦ୍ର ମୁଖ ଥିବା ଆବଶ୍ୟକ ଏବଂ ଚୁଲ୍ଲୀ ମଧ୍ୟରେ କାଷ୍ଠ ପ୍ରଦାନ କରିବା ସକାଶେ ପୂର୍ବ ଦିଗକୁ ପ୍ରଧାନ ମୁଖ ରଖିବା ଉଚିତ ।

ତୈଳର ବା ଘୃତର ପାକ ଏକ ଦିନ ମଧ୍ୟରେ ଶେଷ କରିବ ନାହିଁ । ତୈଳ ବା ଘୃତରେ କ୍ୱାଥ ପ୍ରଦାନ କରି ତାହି ହୋଇଗଲେ ସ୍ନେହ ଦ୍ରବ୍ୟକୁ ପାକ କରିବ; କିନ୍ତୁ ପ୍ରାଣିଜମାଂସର କ୍ୱାଥ ବା ଧାନ୍ୟାଦିର କ୍ୱାଥ ସହିତ ପାକ କରିବାକୁ ହେଲେ ଦିନକ ମଧ୍ୟରେ ଏହି କ୍ୱାଥ ଶୋଷଣ କରିବ । ଦୁଗ୍ଧ ସହ ପାକ କରିବାକୁ ହେଲେ ଦୁଇରାତ୍ରି ମଧ୍ୟରେ, କୌଣସି ଦ୍ରବ୍ୟର ସ୍ୱରସ ସହ ପାକ କରିବାକୁ ହେଲେ ତିନ ରାତ୍ରି ମଧ୍ୟରେ ଏବଂ ତକ୍ର ବା ଘୋଳ, କାଞ୍ଜି ବା ଦଧି ସହ ପାକ କରିବାକୁ ହେଲେ ୫ ରାତ୍ରି ମଧ୍ୟରେ ପାକଶେଷ କରିବ । ମୂଳ ବା ଲତାଦିର କ୍ୱାଥ ସହିତ ପାକ କରିବାକୁ ହେଲେ ଦ୍ୱାଦଶ ରାତ୍ରିମଧ୍ୟରେ ପାକ ଶେଷ କରିବ । ଏହାପର ଘୃତ ବା ତୈଳ ପାକ ଶେଷ କରିବ ।

ଘୃତ ବା ତୈଳର ପାକଶେଷ ପରୀକ୍ଷା କରିବାକୁ ହେଲେ, ପାତ୍ରସ୍ଥ କଳ୍କ ଅଙ୍ଗୁଳିରେ ଲେପନ କରିବ; ଯଦି ଏହି କଳ୍କ ଅଙ୍ଗୁଳିରେ ସଂଲଗ୍ନ ନ ହୁଏ ଏବଂ ଏହାକୁ ବର୍ତ୍ତିପରି ତଳାଯାଇ ପାରେ ତାହାହେଲେ ପାକ ଶେଷ ହୋଇଛି ବୋଲି ବୁଝିବାକୁ ହେବ ।

ତୈଳ ବା ଘୃତ ଯେଉଁ ସବୁ କାଠର ଅଗ୍ନିରେ ପାକ କରିବାକୁ ହେବ, ସେହିସବୁ ବୃକ୍ଷ ଯେପରି ଅମ୍ଳରସବିଶିଷ୍ଟ ବା ବିଷାକ୍ତ ନ ହୁଏ ସେଥିପ୍ରତି ବିଶେଷ ଦୃଷ୍ଟିଦେବା କର୍ତ୍ତବ୍ୟ ।

## କ୍ୱାଥ ବା ପାଚନ ବିଧି ।

କ୍ୱାଥ :—କୁଟିତ ଏକପଲ ଦ୍ରବ୍ୟ ଷୋଳଗୁଣ ଜଳ ସହିତ ମୃତ୍ପାତ୍ରରେ ମୃଦୁ ଅଗ୍ନିରେ ସିଦ୍ଧ କରି ଅଷ୍ଟମାଂଶ ଅବଶେଷ ରଖି ଓହ୍ଲାଇ ତାହାକୁ ଛାଣି ଦେବ । ଈଷଦୁଷ୍ଣ ଅବସ୍ଥାରେ ସେହି ଜଳ ସେବ୍ୟ । ଶୃତ, କଷାୟ, ନିର୍ଯ୍ୟୂହ, ଏହି ତିନୋଟି ଶବ୍ଦ କ୍ୱାଥର ପର୍ଯ୍ୟାୟ ।

ପାଚନ:—ମିଳିତ କ୍ୱାଥ୍ୟ ଦ୍ରବ୍ୟ ୵ ତୋଳା, ୧୬ ଗୁଣ ଜଳରେ ଅର୍ଥାତ୍ ଅର୍ଦ୍ଧସେର ଜଳରେ ସିଦ୍ଧ କରି ଚତୁର୍ଥାଂଶ ବା ଦୁଇଛଟାଙ୍କ ଅବଶେଷ ରଖି ଓହ୍ଲାଇ ଆଣି ଛାଣି ଦେବ । କ୍ୱାଥ୍ୟ ଦ୍ରବ୍ୟ କୋମଳ ହେଲେ ଚାରିଗୁଣ, କଠିନ ହେଲେ ୮ ଗୁଣ, ଅତ୍ୟନ୍ତ କଠିନ ହେଲେ ୧୬ ଗୁଣ ଜଳରେ ସିଦ୍ଧ କରିବ । କିନ୍ତୁ ଯଦି ମୃଦୁ, କଠିନ ଓ ଅତ୍ୟନ୍ତ କଠିନ ଦ୍ରବ୍ୟ ଏକତ୍ର ସିଦ୍ଧ କରିବାକୁ ହୁଏ, ତେବେ ମିଳିତ କ୍ୱାଥ୍ୟ ଦ୍ରବ୍ୟର ଅଠଗୁଣ ଜଳରେ ସିଦ୍ଧ କରି ଚତୁର୍ଥାଂଶ ଅବଶେଷ ରଖି ଓହ୍ଲାଇବ । ଏହାହିଁ ପାଚନ ପ୍ରଣାଳୀ ।



Printed by the B. S. Das, Mukur Press Cuttack.

# ଅଶୁଦ୍ଧି ସଂଶୋଧନ ପତ୍ର ।



| ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ପଂକ୍ତି |
|---|---|---|---|
| ଷଦ୍ର ଷ୍କ୍ଳ ପ୍ରତିପଦ୍ | ଷଦ୍ର ଶୁକ୍ଳ ପ୍ରତିପଦ୍ | । | |
| ମେନ୍ଧବେଗ ବେଗଚକସ୍ରା | ମେନ୍ଧବେଗଚକସ୍ରା | । | |
| ଷିବେବେବେ ନ୍ୟାସବ୍ଧି | ଷିବେବେବେ ନସ୍ୟବଧି | ।/ | |
| ପଞ୍ଚ ବକ୍ରୋଦସ୍ତ | ପଞ୍ଚବକ୍ତ୍ରୋଦର ! | ୭ | ୭ |
| ଗୃରୁଥକଜ୍ୱର | ଗୃରୁର୍ଥିକ ଜ୍ୱର | ୧୮ | ୧୯ |
| ଗ୍ନମେ | ଗମେ ! | ୨୦ | ୪ |
| ମଣଳୀଖଣ୍ଡ୍ରମାନ୍ଧ | ମୂଷଳୀ ଖଣ୍ଡମାନ୍ଧ | ୨୩ | ୫ |
| ଦୋଷଜ-କମଜ-ଜ୍ୱଉଦ୍ୟୋ | ଦୋଷଜ-କର୍ମଜ-ଜ୍ୱରଦ୍ୟୋ | ୨୭ | ୧୫ |
| କମିବେଗ ପର୍ଯ୍ୟନ୍ତଂ | କୃମିବେଗ ପର୍ଯ୍ୟନ୍ତଂ | ୨୮ | ୧୧ |
| ଅଥ ଗନ୍ଧଣ୍ୟାଂ | ଅଥ ଗ୍ରନ୍ଥଣ୍ୟାଂ | ୩୧ | ୯ |
| ନର୍ଗୁଣ୍ଡି ଘତମାନ୍ଧ | ନର୍ଗୁଣ୍ଡି ଘୃତମାନ୍ଧ | ୪୨ | ୭ |
| ବଳଭଦାନୁଜାପତ | ଚଳଭଦ୍ରାନୁଜାପଢଃ | ” | ୨୧ |
| କାନ୍ତେ । | କ୍ୟାନ୍ତେ ! | ୪୪ | ୧୩ |
| ସ୍ଥୂଳକୁଭୋ | ସ୍ଥୂଳକୁରେ ! | ” | ୧୪ |
| ଶାସ ନବନ୍ଧଂ | ଶ୍ୱାସ ନବନ୍ଧଂ | ୪୫ | ୪ |
| ସଗଂ | ସର୍ଗଂ | ୪୭ | ୧ |
| ସ୍ବଗେ | ସର୍ଗେ | ” | ୧୪ |
| ପ୍ରସ୍ତତମେ । | ପ୍ରିସ୍ତତମ ! | ” | ୧୬ |
| ରସା | ରମ୍ଭା | ୫୧ | ୨୧ |
| ଜଗଷ୍ଟ୍ରବଣାଂ | ଜଗଷ୍ଟୂରଣାଂ | ୫୩ | ୧୮ |
| ପାଣୀ | ପାଂଣୀ | ୫୪ | ୧୮ |
| ହରେଦ୍ରଳ୍କ ବେଗଂ | ହରେଦ୍ଗୁଳ୍କ ବେଗଂ | ୫୭ | ୭ |

| ଅଶୁଦ୍ଧ | ଶୁଦ୍ଧ | ପୃଷ୍ଠା | ପଂକ୍ତି |
|---|---|---|---|
| ପାବଣଗୃରୁଚନ୍ଦା ·ନନେ ! | ପାବଣସ୍ପୁରୁଚନ୍ଦ୍ରା | ୫୭ | ୧୪ |
| ଦଟେନଫଡ଼ୋହ୍ନଂ | ଦଣ୍ଡେନଫଶୋହ୍ନଂ | ୫୮ | ୭ |
| ଗଷ୍ଟାର୍ଥ | ସ୍ୱଷ୍ଟାର୍ଥ | ୬୧ | ୧ |
| ଫିହ୍ନଦୋଉ ! | ଫିଦ୍ୱୋଦରଂ ! | ୬୩ | ୭ |
| ସିନ୍ଦରକୁଷ୍ଟ | ସିନ୍ଧୂରକୁଷ୍ଟ | ୬୪ | ୧୯ |
| ତଦ୍ଭୁଭ୍ଟଗଟଦୋଽହ୍ନନଂ | ତଦ୍ଭୁଭଗ୍ନଘଦୋହ୍ନନଂ | ୬୫ | ୮ |
| ଦେ୍ୱ କଟାକ୍ଷପାତଜ୍ଜଢ-<br>ଲେ୍ୱକଛଷ୍ଟ ! | ଦେ୍ୱ କଟାକ୍ଷପାତଜ୍ଜଢ-<br>ଲେ୍ୱକଢଡ୍ଢେ ! | ୬୯ | ୧୯ |
| ମୂପସର୍ଗେ | ମୂପସର୍ଗଃ | ୭୦ | ୪ |
| ଗୁ ଡ଼ନାଗରୀ | ଗୁଡ଼ନାଗରୀ | " | ୧୭ |
| ଭଢଣୀ ଦ୍ୱକନାରାହ୍ନଣ | ଭଢଣୀ ଦ୍ୱିଜନାରାହ୍ନଣ | ୭୪ | ୭ |

